# କଳା ପିଲା

ରିଚାର୍ଡ ରାଇଟ୍



କଥାସାର :
ଲକ୍ଷ୍ମୀନାରାୟଣ ମହାନ୍ତି

# କଳାପିଲା

## ରିଚାର୍ଡ୍ ରାଇଟ୍



ଭଥାଷାର

ଲକ୍ଷ୍ମୀନାରାୟଣ ମହାନ୍ତି

ପ୍ରକାଶକ : ବହ୍ଵଧର

# କଳା ପିଲା

## ରିଚାର୍ଡ ରାଇଟ

କଥାସାର
**ଲକ୍ଷ୍ମୀନାରାୟଣ ମହାନ୍ତି**

ପ୍ରଥମ ପ୍ରକାଶକ : ଜୁନ ୧୯୯୬

ପ୍ରକାଶନ : **ଅଭୟ କୁମାର ଦାସ**
ବହିଘର
ସିନେମା ବଜାର, ବାଲେଶ୍ୱର ୭୫୬୦୦୩

ପରିବେଷକ : ବିଦ୍ୟା ଭାରତୀ
ସିନେମା ବଜାର, ବାଲେଶ୍ୱର :—୭୫୬୦୦୩,
କଟକ ଟ୍ରେଡ଼ିଂ କମ୍ପାନି, ବାଲୁବଜାର, କଟକ-୭୫୩୦୦୨

ମୁଦ୍ରଣ : ଝାଡ଼େଶ୍ୱର ଆର୍ଟ ଗ୍ରାଫିକ ଅଫସେଟ ପ୍ରେସ
ଝାଡ଼େଶ୍ୱର ମନ୍ଦିର ନିକଟ ନୂଆ ବଜାର, ବାଲେଶ୍ୱର,

# KALA PILA

by
RICHARD WRIGHT
Condensed Version of
' BLACK BOY"
by
LAKSHMI NARAYAN MOHANTY

First Edition : June 1996

: Publisher :
BAHIGHAR
Cinema Bazar, Balasore.

Distributors
BIDYA BHARATI
Cinema Bazar, Balasore-756003 Phone-64688

Printed at : Jhadeswar Art Graphic offset press.
Near Jhadeswar Temple. Nayabazar, Balasore.

---

Price : Rupees Ten

---

ବରିଷ୍ଠ ସାରସ୍ୱତ ସାଧକ ଓ 'ଶିଶୁଲେଖା'ର ସମ୍ପାଦକ

ଅଧ୍ୟାପକ ଚିନ୍ତାମଣି ବେହେରା

ସୁହୃଦ୍‌ବରେଷୁ

# ରିଚାର୍ଡ ରାଇଟ୍

ଆମେରିକାର ସାମ୍ପ୍ରତିକ ସାମାଜିକ ଜୀବନ ଓ ଚଳଣି ଶିଶୁ-ମାନଙ୍କର ଶିକ୍ଷା ଓ ମାନସିକ ବିକାଶ ଉପରେ କିପରି ପ୍ରଭାବ ବିସ୍ତାର କରିଛି, ବିଶେଷତଃ ନିଗ୍ରୋ ପିଲାମାନେ କିପରି କଳା-ଗୋରା ଭେଦଭାବର ଶିକାର ହେଉଛନ୍ତି, ସେହି ସମ୍ପର୍କରେ ଅନେକ କଥା "କଳାପିଲା" ଉପନ୍ୟାସଟିରୁ ଜାଣିହେବ। ତାହା ଛଡ଼ା ସମସ୍ତ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ପିଲାଟିଏ ଦୃଢ଼ ଇଚ୍ଛା ଶକ୍ତି ବଳରେ ଜୀବନ ସଂଗ୍ରାମରେ କିପରି ବିଜୟୀ ହୋଇପାରେ, ତାହାଁର ରୋମାଞ୍ଚକର କାହାଣୀ ଏଥିରେ ଦିଆଯାଇଛି।

ରିଚାର୍ଡ ରାଇଟ୍ (୧୯୦୮) ନିଜେ ବି ଜଣେ କଳାଲୋକ, ମିସିସିପିରେ ଜନମ। ସେ ଅଠର ବରଷ ବୟସରେ ଚିକାଗୋକୁ ଆସିଲେ, ସରକାରୀ ଡାକ ବିଭାଗରେ ଚାକିରି ପାଇଲେ, ଆଉ ଲେଖାଲେଖିରେ ମନ ଦେଲେ। ସେ ଅଚିରେ ଜଣେ ବାମପନ୍ଥୀ କବି ଓ ଲେଖକ ଭାବରେ ସ୍ୱୀକୃତି ଲାଭ କଲେ। "ଟମ କକାଙ୍କ ପୁଅଝିଅ" କାହାଣୀ ସଙ୍କଳନ ସେ ୧୯୩୮ରେ ଶ୍ରେଷ୍ଠ କଥାକାର ରୂପେ "ଷ୍ଟୋରୀ ମାଗାଜିନ ପୁରସ୍କାର" ପାଇଥିଲେ। "ନେଟିଭ ସନ" ଉପନ୍ୟାସ ଯୋଗୁଁ ସେ ବିଶ୍ୱ ବିଖ୍ୟାତ ହେଲେ। "ବ୍ଲାକ ବୟ" (କଳାପିଲା) ଉପନ୍ୟାସଟି ହେଲା ତାଙ୍କର ଶେଷ ରଚନା ଏବଂ ଆମେରିକାରେ ବହୁଳ ପ୍ରଚାରିତ।

ଏହି ଉପନ୍ୟାସର କଥାସାର "ଶିଶୁଲେଖା" ପତ୍ରିକାରେ ୧୯୯୩-୯୪ରେ ପ୍ରକାଶିତ ହୁଅନ୍ତେ, ପାଠକଗଣଙ୍କ ଅକୁଣ୍ଠ ଶ୍ରଦ୍ଧା ତା ଉପରେ ପଡ଼ିଲା। ପାଠକଙ୍କ ଅନୁରୋଧ କ୍ରମେ ବର୍ତ୍ତମାନ ତାହା ବହି ଆକାରରେ ପ୍ରକାଶିତ ହେଲା। ସେଥିପାଇଁ ସମ୍ପାଦକ ତଥା ପ୍ରକାଶକଙ୍କୁ ମୁଁ ଗଭୀର କୃତଜ୍ଞତା ଜଣାଉଛି।

**ଲକ୍ଷ୍ମୀନାରାୟଣ ମହାନ୍ତି**

# ॥ ଏକ ॥

ଶୀତୁଆ ସକାଳ । ମୋତେ ଚଉଦ ବରଷ । ଚୁଲି ପାଖରେ ଠିଆ ହୋଇ ଡଡଲା ନିଆଁରେ ହାତ ସେକୁଥିଲି । ବାହାରେ କୋପୀ ବତାସର ଗରଜନ ଶୁଭୁଥିଲା । ଭୋରୁ ଭୋରୁ ମା ଆମକୁ ବକୁଥିଲେ, ଭୂକ ହେବାକୁ ବାରବାର ତାଗିଦା କରୁଥିଲେ । ଗୋଳମାଳ ହେଉଥିବାରୁ ଯେ ଭାରି ଚିଡୁଥିଲେ । ମୁଁ ବି ରାଗିଯାଉଥିଲି । ଆଈମାଆ ଭାରି ବେମାର, ପାଖ କୋଠରୀରେ ଶୋଇଥିଲେ ଡାକ୍ତର ନିତି ଦି ଓଳି ଆସି ତାହାଙ୍କୁ ଦେଖିଯାଉଥିଲେ ।

ମା ଆଜ୍ଞା ଆଦେଶ ନମାନିଲେ ମତେ ଦଣ୍ଡ ମିଳିବ ତଥାପି ମୁଁ ଧୁମ୍‌ଧାମ କରି ଝରକା କଡକୁ ଚାଲିଗଲି. ଲମ୍ବାଧଳା ପରଦାଟା ଥରେ ଆଡେଇ ଦେଲି । ଝରକା ବାଟେ କିଛିସମୟ ଫାଙ୍କା ପଡିଆକୁ ଅନାଇ ରହିଲି । ହେଇଟି କଣ କଅଣ ଖେଳାଯାଇପାରେ ବୋଲି ଭାବିଲି । କିନ୍ତୁ ତକିଆରେ ମଥା ଦେଇ ଶୋଇଥିବା ଆଈ ମାଆଙ୍କ ଚୋପା ଉଠା ଶୁଖିଲା ମୁହଁ ଉପରେ ମୋ ନଜର ପଡିଲାରୁ ମୋ ଛାତିଟା ଧଡପଡ ହେଲା ।

ଚାରିଆଡ଼ ଶୁନ୍‌ଶାନ । ଘରଟା ଯାକ ନୀରବ । ମୋ ସାନ ଭଉଣୀ ପଛ ପଟ ଚଟାଣରେ ବସି ଖେଳଣାରେ ଏକା ଖେଳୁଥିଲା । ସେ ମୋଠୁ ବରଷେ ସାନ । ଅନେକ ଲଣ୍ଡିଏ ଝରକା ପାଖ ଦେଇ ଉଡ଼ିଗଲା । ମୁଁ ହାତ ତାଳି ମାରି ଛି ଛି କଲି । ସାନ ଭଉଣୀ ଚିହ୍ନି ପକାଇଲା—ବେଶି ଜୋରରେ ପାଟି କରନା, ଭାଇ । ମୁଁ ତାହାକୁ ଧମକାଇଲି- "ତୁ ଚୁପ କର ।"

ଏତିକି ବେଳେ ମା ଦରଜା ଠେଲିଦେଇ ମୋ ପାଖକୁ ଧାଇଁ ଆସିଲେ । ଭୃପା ଗଳାରେ ସାବଧାନ କରିଦେଇ ସେ କହିଲେ—"ଏତେ ପାଟିଗୋଳ କରୁଛୁ କାହିଁକି ? ଆଈମାଆ ଯେ ବେମାର ଅଛନ୍ତି, ମାଲୁମ ନାହିଁ ? ଚୁପ କର କହୁଛି !"

ମା ଆ ପୁଣି ଚାଲିଗଲେ । ମୁଁ ହଗଡେଇ ହେଇଗଲି । ସାନ ଭଉଣୀ ଆଉ ନୟନରେ ଥରେ ମତେ ଅନାଇ କହିଲା "ମୁଁ ପରା ତତେ ସେମିତି କହୁଥିଲି ।"

"ଚୁପ ରହ, କହୁଛି— ମୁଁ ତାହାକୁ ଧମକାଇଲି । ତା' ପରେ ମୁଁ ମନ ମାରି ହୋଇ ଘର ଭିତରେ ଟହଲିବାକୁ ଲାଗିଲି । ବାରବାର ଗୋଟାଏ କଥା ଚିନ୍ତା କରି ଖୋଜୁଥିଲି । ଏବେ ମାଆଙ୍କୁ ଯେ ଡର, ଯଦି ସେ କେଉଁ ଆଖିରେ ମୋତେ ଦେଖି ବକନ୍ତି ।

ଧୀରେ ଧୀରେ ପାଦ ପକାଇ ଚୁଲି କଡକୁ ଆଗେଇ ଗଲି । କୋଇଲାଗୁଡ଼ାକ ପୋଡ଼ି ପାଉଁଶ ହୋଇ ଯାଉଥିଲା । ଏତିକିବେଳେ ଗୋଟାଏ ନୂଆ ଧରଣର ଖେଳ ମୋ ମଗଜରେ ଢୁକିଲା । ଘରର କୋଣରେ ଗୋଟିଏ ଝାଡ଼ୁ ଡେରା ହୋଇଥିଲା । ସେଥିରୁ କେଇଟା ନଡ଼ା କାଢ଼ିନେଇ ନିଆଁ ସାମନାରେ ହଲାଇଲି । ସେଟା ଦପ୍ କରି ନିଆଁ ଧରିନେଲା । ସେଟା ଲିଭିଗଲା କ୍ଷଣି ପୁଣି ମୁଠାଏ ନଡ଼ା ନେଇ ନିଆଁରେ ହଲାଇଲି । ସାନ ଭଉଣି କେତେବେଳୁ ଆସି ସେଠି ଠିଆ ହୋଇଥିଲା । ନିଆଁକୁ ଦେଖି ସେ ବାରଣ କଲା—" ଭାଇ ଏମିତି କର ନାହିଁ ।"

ତା' କଥା ମୁଁ କାନକୁ ନେଲି ନାହିଁ । ତଥାପି ସେ କହିଲା "ଯାଉଛି ମାଆକୁ ଏ କଥା କହିଦେବି ।" ମୁଁ ତାହାକୁ ନାଲି ଆଖି ଦେଖାଇଲି-"କହିଦେଲେ ତୋତେ ମାରି ହାତଗୋଡ଼ ଚୂନା କରିଦେବି ।"

ତା ପରେ ମୋ ମଗଜରେ ଆଉ ଗୋଟିଏ ଅଜବ ଖିଆଲ ଖେଳିଲା । ଆଉ କିଛି ନଡ଼ା କାଢ଼ି ନେଇ ନିଆଁକୁ ଦେଖାଇଲି, ଆଉ ଧାଇଁଯାଇ ସେଇ ନିଆଁଟା ପରଦା ତଳେ ହଲାଇଲି । ସାନ ଭଉଣିର ନିଷେଧ ଆଦୌ ମାନିଲି ନାହିଁ ।

କିନ୍ତୁ ତା ଆଗରୁ ପରଦାରେ ନିଆଁ ଲାଗିଗଲା, ହୁ ହୁ ହୋଇ ଜଳିଲା । ଭୟରେ ମୁଁ କେତେ ପାଦ ପଛକୁ ହଟି ଆସିଲି । ପରଦାରୁ ନିଆଁର ଶିଖା ଯାଇ ଛାତରେ ଉଠିଲା । ଘରଟା ସାରା ପୁରିନେଇ ଆଭା ଖେଳିଗଲା । ମୁଁ କାଠ ପାଲଟି ଗଲି । ମୋ ପାଟିରୁ ପଦେ କଥା ବାହାରିଲା ନାହିଁ । ଦେଖିଲି ଭଉଣି କେତେବେଳୁ ସେଠୁ ଚାଲି ଗଲାଣି । ଘର ସାରା ଧୂଆଁ ସେଥିରେ ମୋ ଦମ୍ ଅଟକି ଗଲା । ନିଆଁର ହଲକ ଆସି ମୋ ଆଖିରେ ମୁହଁରେ ଲାଗିଲା ।

ମୁଁ ବେପେଇ ଘରଆଡେ ଧାଇଁଲି । ତେଣେବି ଧୂଆଁ ଦେଖାଦେଲାଣି । ମାଆ ଧୂଆଁର ଗନ୍ଧ ବାରି ସାରିବେଣି । ନିଆଁ ଦେଖିଲାକ୍ଷଣି ମୋ ହାତଗୋଡ ନିଶ୍ଚୟ ଭାଙ୍ଗି ଦେବେ । ସତରେ ଏଭଳି କାମଟା ଭାରି ଖରାପ ହେଲା । ମୁଁ କୁଆଡେ ବା ଯାଇ ଲୁଚିବି ? ନା, ପଳାଇବି ? ବେପେଇ ଘରୁ ତଳକୁ ଯାଇ ପଛପଟ ଅଗଣାକୁ ଧାଇଁଗଲି । ହାମୁଡେଇ ହାମୁଡେଇ ଯାଇ ଇଟା ଚିମିଣିର ଗୋଟାଏ ଅନ୍ଧାରୁଆ କୋଣରେ କାଠ ପରି ପଡ଼ି ରହିଲି । ମାଆ ଆଜି ମୋ ପତା ପାଇବେ ନାହିଁ, କି ମୋତେ ଗୃହକରେ ପିଟି ପାରିବେ ନାହିଁ ।

ମଥାଉପରେ ଛାତଟା ଥରିବାକୁ ଲାଗିଲା । ଅନେକ ଲୋକଙ୍କ କରୁଣ ପାଟିଗୋଳ ମୋ କାନରେ ଆସି ବାଜିଲା । କିଛିସମୟ ପରେ ଦମକଳର ଘଣ୍ଟି ଶୁଭିଲା । ତାହା ହେଲେ

ସତରେ କ'ଣ ଆମ ଘରେ ନିଆଁ ଲାଗିଗଲା ? କୋଲାହଳ ବେଳକୁ ବେଳ ବଢ଼ିବାକୁ ଲାଗିଲା । ମୋତେ କାନ୍ଦ ମାଡ଼ିଲା ଓ ଖୁବ ଏକାକୀ ବୋଧ ହେଲା । ଦେଖି ପାରିଲି ଅଇ ମାଆ ବଛଣାରେ ଅସହାୟ ଭାବରେ ପଡ଼ି ରହିଅଛନ୍ତି । ତାଙ୍କ କଳା କେଶରେ ନିଆଁର ଧାସ ବାଜୁଛି । ମାଆ ଓ ଭାଇ ହୁଏତ ପୋଡ଼ି ଯାଇଛନ୍ତି । ଏବେ ମୁଁ କାହାକୁ ବା ମୁହଁ ଦେଖାଇବି ?

ମୁଁ କାନ୍ଦିବାକୁ ଲାଗିଲି । ପାଟିଗୋଳ ଟିକିଏ ବନ୍ଦ ହେଲାରୁ ମୁଁ ନିଜକୁ ଅସହାୟ ମଣିଲି । ପାଖରୁ କାହାର ପାଟି ଶୁଭିଲା—ଭଗ୍ନୁଡ଼ି ।

ମାଆ ପାଗଳ ହୋଇଯାଇ ମୋତେ ଡାକୁଥିଲେ । ତାଙ୍କର ପାଦ ମୋ ନଜରରେ ପଡ଼ିଲା । ଯେ ଏଣେ ତେଣେ ମୋତେ ଆକୁଳରେ ଖୋଜି ବୁଲୁଥିଲେ । ଏବେ ମୁଁ ତାଙ୍କର ବିରସ ମୁହଁଟି ଦେଖି ପାରିଲି । ଦମ ବନ୍ଦ କରି କାନପାରି ପଡ଼ି ରହିଲି । ମାଆଙ୍କ ମୁହଁଟି କୁଆଡେ ଉଭେଇ ଗଲା । ସେ ମୋତେ ଘନ ଅନ୍ଧାରରେ ଆଉ ଦେଖି ପାରିଲେ ନାହିଁ ।

ମାଆ ପୁଣି କାନ୍ଦ କାନ୍ଦ ହୋଇ ଚିଡ଼ି ଗୁଡ଼ିଲେ-ଭଗ୍ନୁଡ଼ି, କୁଆଡେ ଗଲୁ ? ଘରେ ପରା ନିଆଁ ଲାଗିଛି । ଧନ ମୋର କୁଆଡେ ଗଲାରେ, ତାହାକୁ ଟିକିଏ ଖୋଜି ଆଣିଦିଅ କିଏ ସମସ୍ତ ପଟେ ଦେଖି ପାରିଲା, ଆଉଗୋଟିଏ ମୁଖ ମୋତେ ଖୋଜି ବୁଲୁଛି । ହଁ ବାବାଙ୍କର ତ, ବହଳ ଅନ୍ଧାରେରେ ବି ହୁଏତ ଯେ ମତେ ଦେଖି ପାରିଲେ ହାତରେ ଠାରେଦେଲେ—ହେଇତ, ସେଇଠିଯେ ।

ନା, ଏଠି ନାହିଁ —ମୁଁ ବଡ ପାଟିରେ କାନ୍ଦି ପକାଇଲି ।

ବାବା ଡାକିଲେ—ବୋକାଟା ବାହାରି ଆସୁନୁ ନା ।

ନା—ମୁଁ ଅଛି ବସିକି ।

ଦେଖି ପାରୁନୁ, ଘରେ ନିଆଁ ଲାଗିଛି ।

ନା, ମୁଁ ଯିବି ନାହିଁ—ପୁଣି ମୋ ପାଟିରୁ ବାହାରିଗଲା ।

ବାବା ରାଗରେ ଅମଥମ ହୋଇ ଧାଇଁ ଆସିଲେ, ମୋର ଗୋଟାଏ ଗୋଡ ଜୋରରେ ଟାଣି ଧରି ଧମକାଇଲେ—ବାହାରି ଆସୁଛୁ ନା ବୋକା କେଉଁଠିକାର ।

ନା ମୋତେ ଛାଡ଼ିଦିଅ—ମୁଁ କାନ୍ଦି ଧରିଲି । ମୋ ଆଙ୍ଗୁଳି ଗୁଡାକ ଶିଥିଳ ହୋଇଗଲା ।

କିନ୍ତୁ ବାବା ଯେ ନଗ୍ରେଡ ବଡ଼ । ସେ ମୋତେ ଟାଣି ଟାଣି ପଛ ଅଗଣାକୁ ନେଇଗଲେ । ସେ ହାତ ଛାଡ଼ି ଦେବାରୁ ମୁଁ ଲୋକଙ୍କୁ ଟପି ସଡ଼କ ଆଡେ ଧାଇଁଲି । ତେବେ ମୁଁ ପଳାଇ ଯାଇ ପାରିଲି ନାହିଁ, ଅନ୍ୟମାନେ ମୋତେ ତତ୍କ୍ଷଣେ ଧରି ପକାଇଲେ ।

ତା ପରେ ସବୁ କିଛି ଗୋଳମାଳିଆ ହୋଇଗଲା । ତଳ ଉପର ଓ କନ୍ଦାକଟା ଭିତରେ ମୁଁ ଏତିକି ବୁଝି ପାରିଲି, ନିଆଁରେ କେହି ପୋଡ଼ିଯାଇ ନାହାନ୍ତି । ହୁଏତ ଘାନ ଖାଇ ଆଗରୁ ମାଆଙ୍କୁ ଖବର ଦେଇଥିଲା । ତେବେ ତା ଆଗରୁ ଘରର ଅଧିକରେ ନିଆଁ ଚରି ଯାଇଥିଲା । ଯାହା ହେଉ ଅଜା ଓ ମାମୁଁ ଆଇମାଆଙ୍କୁ କୌଣସିମତେ ବିଛଣାରୁ ଉଠାଇ ଆଣିଥିଲେ । ମୋତେ କେଉଁଠି ଦେଖି ନପାରି ସମ୍ଭବ ଧରି ନେଇଥିଲେ, ବୋଧହୁଏ ମୁଁ ନିଆଁରେ ପୋଡ଼ି ଯାଇଛି ।

ଗଛରୁ କଞ୍ଚି ଏ ଡାଳ ଭାଙ୍ଗି ଆଣି ମାଆ ମୋତେ ନାଲି ଆଖି ଦେଖାଇ କହିଲେ—ତୁ ଆମ ସମସ୍ତଙ୍କୁ ତ ନୁ ଡେଇ ମାରିଥିଲୁ । ରହ, ଏବେ ନେ ଦେଖୁଛି ତୋତେ ।

ଏହା କହି ମାଆ ନିଷ୍ଠୁର ଭାବରେ ମୋ ଉପରେ ଜୋରରେ ପାହାର ପରେ ପାହାର ବସାଇବାକୁ ଲାଗିଲେ । ମୋର ଚେତା ହଜିଗଲା । କେତେ ସମୟ ପରେ ଚେତା ଫେରିଲାରୁ ବୁଝି ପାରିଲି, ମୁଁ ଗୋଟାଏ ବିଛଣାରେ ଶୋଇଛି । ଏଣୁ ତେଣୁ ଚୁଡ଼ାଏ ବକିବାକୁ ଲାଗିଲି । ଏପରିକି, ବିଛଣାରୁ ଉଠି ପଳାଇବାକୁ ବସିଲି । କିନ୍ତୁ ବାବା ଓ ମା ମୋତେ ମାଡ଼ି ବସିଲେ । ଭୀଷଣ ଭୟରେ ମୁଁ ଥରିବାକୁ ଲାଗିଲି ।

ଡାକ୍ତରଙ୍କୁ ଡାକ ଆଣିଲେ । ସେ କୁଆଡେ ମେଲେ ବରାବର ବିଛଣାରେ ଶୁଆଇ ରଖିବାକୁ ମତ ଦେଲେ । ତହୁଁ ମୁଁ ହଇଚଇରେ ଚୁପଚାପ ହୋଇଗଲି । ସେତିକି ବେଳେ ମୁଁ ଅନୁଭବ କରୁଥିଲି, ଯେପରି ମୋ ଦେହ ନିଆଁରେ ଜଳୁଛି । ମୁଁ ଆଉ ସୋଇ ପାରିଲି ନାହିଁ । ଜରର ତାପ କମାଇବା ଲାଗି ମୋ କପାଳ ଉପରେ ବରଫର ଥଳିଟିଏ ରଖାହେଲା । ଟିକିଏ ଆଖି ମୁଦିଲା କ୍ଷଣି ମୋତେ ମାଲୁମ୍ ହେଲା, ସତେକି ଗୁଡ଼ାଏ ବଡ ବଡ ଧଳା ଥଳି ମୋ ଉପରେ ଝୁଲାଇ ଦିଆଯାଇଛି । ଦିନକୁଦିନ ମୋ ହାଲତ ଅଧିକ ଖରାପ ହେବାକୁ ଲାଗିଲା । ଭୟରେ ମୋ [illegible] ଶୁଖିଯାଉଥିଲା । ମୋତେ ମାଲୁମ ହେଉଥିଲା, ହୁଏତ ଏବେ ସେହି ଥଳି ଗୁଡ଼ାକ ମୋ ମଥା ଉପରେ ଖସିପଡ଼ିବ । ସେଗୁଡ଼ାକୁ ମୋ ଆଖି ଆଗରୁ କାଢି ନେବାକୁ ମୁଁ ଦିନ ରାତି ବରାବର ବାବା ଓ ମାଆଙ୍କୁ ଅନୁନୟ କରୁଥିଲି । କିନ୍ତୁ କେତେ ବେଳେ ଶୁଣିବାକୁ ପାଉଥିଲି, ମୋ ଛଡ଼ା ସେ ଗୁଡ଼ାକୁ ଆଉ କେହି ଦେଖି ପାରୁ

ନାହାନ୍ତି । ନଦର କୋଳରେ ଝାଲପଡ଼ିଲା କ୍ଷଣି ହଠାତ୍ ବିକଟ ଚତ୍କାର କରି ଧଡ଼ ପଡ଼ ହୋ ଉଠି ପଡ଼ୁଥିଲି । ଭୟରେ ମୋତେ ଆଉ ନଦ ମାଡ଼ୁ ନଥିଲା । ଯାହା ହେଉ ଧୀରେ ଧୀରେ ସେହ ଭୟଙ୍କର ସ୍ୱପନ କଟିଗଲା ।

ମୁଁ ଧୀରେ ଧୀରେ ଆରୋଗ୍ୟ ହେବାକୁ ଲାଗିଲି । ତେବେ ସେହ ନଷ୍ଟୁର ମାଡର କଥା ଏଯାଏ ମୁଁ ପାଶୋରି ପାରୁ ନାହିଁ ।

—×—

## ॥ ଘୁର ॥

ଦନେ ମାଆ ଜଣାଇଲେ, ଆମକୁ ଅଚରେ ଜାହାଜରେ ଚଢ଼ି ମେମ୍‌ଫିସ୍‌କୁ ଯିବାକୁ ହେବ । ଏହା ଶୁଣିଲାଠୁଁ ମୁଁ ଦନ ଗଣିବାରେ ଲାଗିଲି ।

ମାଆଙ୍କୁ ପଚାରିଲି—ଜାହାଜଟା କେତେ ବଡ ?

ଅଠ ବିରାଟ, ଅବକଲ ଗୋଟାଏ ଗ୍ରେଟ ପାହାଡ ଭଳି ମାଆ ଜବାବ ଦେଲେ ।

ସେଥିରେ ସିଟି ଅଛ ନା ?

ଅଛ ।

ସେଟା ବାଜେ ନା ?

ହିଁ ।

କେତେବେଳେ ?

କପ୍ତାନ ଯେତେବେଳେ ବଜାଇବ ।

ଜାହାଜର ରଙ୍ଗ କପର ?

ଧଳା ।

ମାଆ ଆମେ କେତେ ସମୟ ଜାହାଜରେ ରହବା ?

ଗୋଟିଏ ଦନ ଆଉ ଗୋଟିଏ ରାତ ।

ଜାହାଜରେ ଆମେ ଶୋଇ ପାରିବାନା ?

ହଁ, ନିଦ ମାଡ଼ିଲେ ତୁମ ଜାଗାରେ ଶୋଇ ପାରିବ ।

ରାତ ସପନ ଦେଖିବାକୁ ଲାଗିଲି, ଗୋଟାଏ ବିଶାଳ ଜାହାଜରେ ବସି ଆମେ ସାତ ସାଗର ଟପି ଯାଉଛୁ । କିନ୍ତୁ ଶେଷ ଦିନ ମାଆ ବାପାଙ୍କୁ ନେଇଯାଇ ମୋତେ ଗୋଟିଏ ଗ୍ରେଟ ମଇଳା ଷ୍ଟିମର ଦେଖାଇଦେଲେ । ମୁଁ ତା ଉପରକୁ ଚଢ଼ିଲି । ଏହି ଷ୍ଟିମର ଓ ମୋ ସପନର ଜାହାଜ ଏକ ନୁହେଁ । ସେଥିରେ ଚଢ଼ିବାକୁ କହିଲାରୁ ମୁଁ କାନ୍ଦ ପକାଇଲି । ଏହା ଦେଖି ମାଆ ଭାବିଲେ, ହୁଏତ ମୁଁ ବାହାରକୁ ଯିବାକୁ ଚାହୁଁ ନାହିଁ । କିନ୍ତୁ ଅସଲ କାରଣଟା କୌଣସିମତେ ମୁଁ ତାଙ୍କୁ ବୁଝାଇ ପାରିଲି ନାହିଁ । ବୁଲି ଦେଖିଲି, ଜାହାଜରେ ନିଗ୍ରୋ ଯାତ୍ରୀ ମାନେ ତାଆସ ଓ ପଶା ଖେଳୁଛନ୍ତି, ମଦ ପିଉଛନ୍ତି, ଗୀତ ବୋଲୁଛନ୍ତି ଆଉ ଅଯଥା ପାଟିଗୋଳ କରୁଛନ୍ତି । ବାବା ମୋତେ ତଳକୁ ନେଇଯାଇ ଅସଲ ଇଞ୍ଜିନ ଘରଟା ଦେଖାଇଦେଲେ । କଅଣ୍ଟା ଲୋକଭଳି ଇଞ୍ଜିନଟା ବଡ଼ ଜୋରରେ ଆବାଜ କରି ଚାଲୁଥିଲା ।

ଆମେ ମେମ୍ଫିସରେ ଗୋଟିଏ ଭଡ଼ାଘରେ ଯାଇ ରହିଲୁ । ଏକଦମ୍ ମଳିନ ପୁରୁଣା କୋଠାଟିକୁ ଦେଖି ମୋତେ ଅଡ଼ୁଆ ଲାଗିଲା । ସେଠାରେ ମଧ୍ୟ କିଛି ଗଛଲତା ନ ଥିଲା । କେବଳ ଗୋଟିଏ ଶୋଇବା କୋଠରି ଓ ଟିକିଏ ରୋଷେଇଘର । ସେଥିରେ ଆମେ ଚାରିଜଣ ଯଥାଶୁଣ୍ଡି ହେବାକୁ ଟିକିଏ ସ୍ଥାନ ମିଳିଲା—ବାବା, ମାଆ, ସାନ ଭାଇ ଓ ମୁଁ । ଘରର ପଛପଟେ କିଛି ପକା ଜାଗା ଥିଲା । ମୁଁ ଓ ସାନଭାଇଟି ଏଠାରେ ଖେଳିବାର ସୁଯୋଗ ପାଇଲୁ ।

ମେମ୍ଫିସରେ ବାବା ଗୋଟିଏ ଔଷଧ ଦୋକାନରେ ରାତି ଜଗୁଆଳିର ଚାକିରି ପାଇଲେ । ସେ ଦିନରେ ଶୋଇଥିଲା ବେଳେ କିଛି ପାଟିଗୋଳ ନ କରିବା ଲାଗି ଆମ ଉପରେ କଡ଼ା ହୁକୁମ ଜାରି ହୋଇ ଥିଲା । ଏପରିକି ତାହାଙ୍କ ସାମନାରେ ଟିକିଏ ହସିବା କି କାଶିବା ସୁଦ୍ଧା ବାରଣ ଥିଲା । ଭୋଜନ ବେଳେ ଖୁବ୍ ମୋଟା ସୋଟା ବାବା ପାଟିକୁ ବଡ଼ ବଡ଼ ଗୁଣ୍ଡା ନେଉଥିଲେ, ଚୋବାଉଥିଲେ, ଗିଳୁଥିଲେ, ହେଉଁକୁଟି ମାରୁଥିଲେ, ଶେଷରେ ପେଟରେ ହାତ ବୁଲାଉଥିଲେ । ମୁଁ ରୋଷେଇ ଘରର ଦୁଆର ମୁହଁରେ ଠିଆ ହୋଇ ଆଁ କରି ଦେଖୁଥିଲି ।

ଦିନେ ସକାଳେ ମୁଁ ଓ ମୋର ଭାଇ ଘରର ପଛପଟେ ଖେଳୁଥିଲୁ । ଏତିକି-ବେଳେ ଗୋଟିଏ ବିଲେଇ ଛୁଆ କୁଆଡ଼ୁ ଆସି ମିଆଁଉ-ମିଆଁଉ ହୋଇ ରଡ଼ିବାକୁ ଲାଗିଲା । ତାହାକୁ କିଛି ଖାଇବାକୁ ଦେଲୁ, ପିଇବାକୁ ପାଣି ମଧ୍ୟ । ତଥାପି ତାହାର ଚିତ୍କାର ଥମିଲା ନାହିଁ । ବାବା ଭିତରେ ଶୋଇବା ବନ୍ଦ କରି

ରଠି ଆସିଲେ, ଆମକୁ ରୁଦ୍ଧ ରହିବାକୁ ଆଖି ଦେଖାଇଲେ । ଆମେ ଜଣାଇ-ଦେଲୁ, ବଲେଇ ଛୁଆଟା ସବୁ ଗୋଳମାଳର ମୂଳ । ତହୁଁ ବାବା ବଡେଇଦେଲେ, ସେଟାକୁ ଏଠୁ ଛଡେଇଦିଅ । କିନ୍ତୁ ସେଟା ଆମ କଥା ମାନିଲା ନାହିଁ, ଚଲେବ ହଟିଲା ନାହିଁ । ବରଂ ସେଟା ଆମ ପାଦରେ ଦେହ ଘଷିବାକୁ ଲାଗିଲା, କରୁଣ ଗଳାରେ କାକୁତି ମିନତି କରୁଥିଲା ।

ବାବା ଅଧିକ ରାଗିଯାଇ ଆମକୁ ହୁକୁମ ଦେଲେ, ତମ ଇଚ୍ଛା ଯାହାକର ଏକ, ସେଟାକୁ ଏଠୁ କୌଣସି ମତେ ବିଦା କରଦିଅ ।

ଘରେ ଖୋଜ ଖୋଜ ଖଣ୍ଡିଏ ଦଉଡି ନେଇ ଆସିଲି । ସେଥିରେ ଫାଶଟିଏ ତିଆରି କଲି । ତାପରେ ସେହି ଫାଶଟାକୁ ବଲେଇ ଛୁଆର ବେକରେ ଗଳାଇଦେଲି ଏବଂ ଦଉଡିଟି କାନ୍ଥରେ ଗୋଟିଏ କଣ୍ଟାରେ ଝୁଲାଇ ଦେଲି । ଫଳରେ ଛୁଆଟି ଶୂନ୍ୟରେ ଝୁଲି ଗୁଟି ପିଟି ହେଲା । କିଛି ସମୟ ଗଁ ଗଁ ହେଲାରୁ ତା ପାଟିରୁ ରକତ ଝରିଲା । ତା ଦେହ ଫୁଲିଗଲା । କ୍ଷଣପରେ ତା' ମୁଖଟା ନେଳ ହୋଇ ରହିଲା, ସଦ୍ୟ ଧାଉଆ ଜିଭଟା ବାହାରି ଆସିଲା ।

ଦେଖିଲି ସାନ ଭାଇ ପଛଅଗଣାରେ ଚୁପ୍‌ଚାପ୍ ବସିଛି ତା' କାନ କଡରେ ଫୁସ୍ ଫୁସ୍ କରି କହିଲି—ଜାଣୁ ସେଇ ବଲେଇ ଛୁଆଟାକୁ ଖତମ କରିଦେଲି ।

ଭାଇ ଭୀରତେ ବିରସ ବଦନରେ କହିପକାଇଲା—ଏଟା ମୋଟେ ଭଲ କାମ ହେଲା ନାହିଁ ।

ତୁ କିଛି ବୁଝି ନାହୁଁ ଦେଖିଲୁ ତ, ବାବା କିପରି ଆରାମରେ ଶୋଇ ପାରିଲେ ମୁଁ ପ୍ରତିବାଦ କଲି ।

ଭାଇର ପାଟିରେ କିଛି କଥା ବାହାରିଲା ନାହିଁ । ସେ ଶୂନ୍ୟରେ ଝୁଲୁଥିବା ମଲା ବଲେଇ ଛୁଆଟାକୁ ଖାଲି ଅପଲକ ନୟନରେ ଅନାଇରହିଲା ।

କିଛି ସମୟ ପରେ ଭାଇ କହିଲା-ଦେଖ ସେଟା ତୁମ ପଛେ ପଛେ ଗୋଡାଇବ ।

ଆରେ, ସେଟା ପରା ମରି ଭୂତ ହୋଇ ଗଲାଣି ମୁଁ ଭାଇକୁ ବୁଝାଇ ଦେଲି ।

ତୁହି ମୁଁ ମାଆକୁ ଏଇନେ ଏ କଥା ଜଣାଇ ଦେଉଛି କହି ସେ ମାଆଙ୍କ ପାଖକୁ ଧାଇଁ ପଳାଇଲା ।

ମାଆଙ୍କ ଆଗମନକୁ ମୁଁ ଚକାଇ ରହିଲି । ଏଣେ ଭୀଷଣ ଡରରେ ମୋ ଦେହ ଥରୁଥିଲା ।

ଏତିକି ବେଳେ ମାଆ ପିଲା ଗାଉନରେ ହାତ ପୋଛୁ ପୋଛୁ ଧାଇଁ ଆସିଲେ

ଶୂନ୍ୟରେ ଝୁଲୁଥିବା ମଲା ବଲେଇ ଛୁଆଟି ଉପରେ ନଜର ପଡ଼ନ୍ତେ ଖଣି ତାହାଙ୍କ ମୁଖ ଶୁଖି ଧଳା ପଡ଼ିଗଲା ।

ମାଆଲୋ, କାହିଁକି ଏମିତି କଲୁରେ ବାପ ? ମାଆ ଭୟରେ ଆତୁର ହୋଇ କହି ପକାଇଲେ ।

ମୁଁ ସଫେଇ ଦେଲି—ବଲେଇ ଛୁଆଟା ଖୁବ୍ ରଡ଼ ଛାଡ଼ୁଥିଲା, ତେଣୁ ସେଟାକୁ ମାରି ପକେଇବାକୁ ବାବା ମୋତେ କହିଲେ ।

ହେଉ, ଚାଲ ତୋ ବାବାପାଖକୁ । ଏଇନେ ସେ ତୋ ମଜା ବାହାର କରିଦେବେ ଯେ, ବୋକା କେଉଁଠିକାର ।

ବାବା ପରା ମୋତେ କହିଲେ ।

ଚୁପ କର କହି ମାଆ ମୋତେ ହାତ ଧରି ଟାଣି ଟାଣି ବାବାଙ୍କ ପାଖକୁ ନେଇଗଲେ । ମୋ ଅପକରମ ତାହାଙ୍କୁ ଜଣାଇ ଦେଲେ ।

ବାବା ତୁରନ୍ତେ ଗୋଟିଏ ବିକଟ ଗରଜନ ଛାଡ଼ିଲେ ମୁଁ କଅଣ କହିଥିଲି ତୁ ଠିକ୍ ଶୁଣିଥିଲୁ ?

ସେଟାକୁ ମାରି ପକାଇବାକୁ ଆପଣ କହି ନ ଥିଲେ ?

ନା, ମୁଁ ସେଟାକୁ ଖାଲି ଘରୁ ତଡ଼ି ଦେବାକୁ କହିଥିଲି ।

ବାଃ, ଆପଣ ସେଟାକୁ ମାରି ପକାଇବାକୁ କହିଲେ ନାହିଁ ?

ବାବାଙ୍କ ମୁଖ ଉପରେ ମୁଁ ଜବାବ ଦେଲି।

ବାହାର ଏଠୁ, ବାହାରଯାଆ, ପାଜି ଅଘୋରା କେଉଁଠିକାର ! ନୋହିଲେ ତୋତେ ଆଜି ଖୁନ କରିବି-ବାବାଙ୍କ ମୁଖ ରାଗରେ ନାଲି ପଡ଼ିଗଲା । ତାପରେ ସେ କଡ଼ ଲେଉଟାଇ ଶୋଇଲେ ।

ବାବାଙ୍କ ଉପରେ ମୋର ପ୍ରଥମ ବିଜୟ ହାସଲ କଲି । ସେ ଆଉ ମୋତେ ଦଣ୍ଡ ଦେଇପାରିଲେ ନାହିଁ । ଏଥିରେ ମୋର ଖୁସି କହିଲେ ନ ସରେ ।

କିନ୍ତୁ ମାଆ ହେଲେ ଅତିଶୟ ଭାବପ୍ରବଣ । ସେ ଜୀବ ହତ୍ୟାର ସକଳ ଅପରାଧ ମୋ ମଥା ଉପରେ ଚପାଇ ଦେଲେ । ଉପହାର ସାରା ସେ ମୋତେ ବକିବାକୁ ଲାଗିଲେ । ସନ୍ଧ୍ୟା ହେଲାରୁ ମୋର ଭୟ ଆହୁରି ବଢ଼ିଗଲା । ଏକା ଅନ୍ଧାରୋ ଘରକୁ ପଶିବାକୁ ମୋ ଦେହ ଥରିଲା ।

ସେତିକି ବେଳେ ମାଆ ମୋତେ ଧମକାଇଲେ—ଆଜି ରୁ ଏମିତି ଦଣ୍ଡ

ପାଇବୁ ଯେ ଜୀବନରେ କେବେ ତାହା ଭୁଲି ପାରିବୁ ନାହିଁ ।

ଏପରି ଖରାପ କାମ ମୁଁ ଆଉ କେବେ କରିବି ନାହିଁ, ସତରେ ଏଥି ପାଇଁ ମୁଁ ବିଶେଷ ଦୁଃଖିତ, ମାଆ - ମୁଁ ଅନୁତାପ କମ୍ପିତ ଗଳାରେ ମିନତି କଲି ।

ଶୋଇବାକୁ ଯାଉଥିଲି । ମାଆଙ୍କର କଡା ହୁକୁମ୍ ମିଳିଲା, ଗାଢ ଅନ୍ଧାରରେ ଏକା ବାହାରକୁ ଯାଇ ବିଲେଇ ଛୁଆଟିକୁ କବର ଦେବାକୁ ହେବ ।

ମୁଁ ଭୟାତୁର ଗଳାରେ ଅନୁନୟ କଲି - ନା, ପାରିବି ନାହିଁ ।

ମାଆ ପୁଣି ଆଦେଶ ଦେଲେ - ଯାଅ, ଛୁଆଟାକୁ କବର ଦେଇ ଆସ ।

ମୋତେ ଯେ ଖୁବ୍ ଡର ମାଡୁଛି, ମାଆ ।

ବିଲେଇ ଛୁଆଟାର ବେକରେ ଫାଶ ଲଗାଇ ଦେଲୁ ବେଳେ ଟିକିଏ ଡର ମାଡିଲା ନାହିଁ ? ମାଆ ବିକଲେ ।

ମାଆଙ୍କୁ ମୁଁ ବୁଝାଇବାକୁ ବସିଲି - ସେଟା ଯେ ଛୋଟ ବିଲେଇ ଛୁଆଟିଏ !

ହେଉ ପଛକେ ବିଲେଇ ଛୁଆ, ତାହାକୁ ପୁଣି ତୁ ବଞ୍ଚେଇ ପାରିବୁ ?

କିନ୍ତୁ ବାବା ପରା ମୋତେ କହିଲେ—ବାବାଙ୍କ ମଥାରେ ଦୋଷଟା ଚପାଇ ଦେବାକୁ ଗଲାକ୍ଷଣି ମାଆ ମୋ ଗାଲରେ ଗୋଟାଏ ପ୍ରଚଣ୍ଡ ଥାପଡ ବସାଇ ଦେଲେ ।

ଫେର ମିଛ କହୁଚୁ ! ମାଆ ଭିତରବରରେ ଛୁଟିଯାଇ ଗୋଟିଏ ଛୋଟ କୋଦାଳ ନେଇ ଆସି ମୋ ହାତକୁ ବଢାଇ ଦେଲେ, ଆଉ କହିଲେ—ଯାଅ, ଗୋଟାଏ ଗାତ ଖୋଳି ବିଲେଇ ଛୁଆଟିକୁ କବର ଦେଇଆସ ।

ନାକରେ ସୁଁ ସୁଁ କାନ୍ଦଣାର ବାହାନା କରି ମୁଁ ଗାଢ଼ ଅନ୍ଧାରରେ ବାହାରକୁ ଗୋଡ କାଢ଼ିଲି । ଭୟରେ ମୋ ପାଦ ଦୁଇଟି ଅବଶ ହୋଇ ଆସିଲା । ଜବତ ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ମୁଁ ମଲା ବିଲେଇ ଛୁଆଟି ପାଖକୁ ଗଲି । ହୁଏତ ମାଆ ବି ମୋ ପଛେ ପଛେ ଆସୁଥିଲେ ।

ମାଆ, ଟିକିଏ ପାଖକୁ ଆସ—ମୁଁ କାକୁତିରେ ଅନୁନୟ କଲି ।

କାହିଁକି ? ସେତେବେଳେ ବିଲେଇ ଛୁଆଟା ପାଖରେ କିଏ ଠିଆ ହୋଇଥିଲା? ମାଆ ମୋତେ ଚିଡ଼ାଇଲେ । ଘରରେ ଗାଢ଼ ଅନ୍ଧାରରୁ ତାହାଙ୍କ ଗଳା ଭାସି ଆସିଲା ।

ଅନ୍ଧାରରେ ମୋତେ ମାଲୁମ ହେଲା, ହୁଏତ ବିଲେଇ ଛୁଆଟା ମୋତେ ଖଟମଟ କରି ଅନାଇଛି, ଆଉ ତାହାର ଆଖିରେ ପ୍ରତିହିଂସାର ଅନଳ ଜଳୁଛି । ମୁଁ ପଛେଇ ଗଲି ନା, ମୁଁ ସେଟାକୁ ଆଦୌ ଛୁଇଁବି ନାହିଁ ।



ଅରେ ଫାଶଟା ଖୋଲ୍ ଦେ—ମାଆ ହୁକୁମ ଦେଲେ । ମୋ ହାତ ଥରଲା । ବାହୁଡ଼ର ଗଣ୍ଠିଟା ଫିଟାଇ ଦେବାକୁ ବଲେଇ ଛୁଆଟା ଧପ୍ କରି ମାଟିରେ ଖସି ପଡ଼ିଲା ।

ତା ପରେ ମାଆଙ୍କ କଥା ଅନୁସାରେ ମଲା ବଲେଇ ଛୁଆଟାକୁ ନେଇଯାଇ ମାଟିରେ ଗୋଟିଏ ଗାତ ଖୋଳି କବର ଦେଲି । ତା ଦେହ ହେମାଳ ଅଚଳ ହୋଇଯାଇଥିଲା । ଗୋଟାଏ ଦୀର୍ଘଶ୍ୱାସ ଛାଡ଼ି ମୁଁ ଘର ଆଡ଼େ ପାଦ ବଢାଉଥିଲି । ଏତିକିବେଳେ ମାଆ ମୋ ହାତ ଧରିପକାଇ ପୁଣି ମୋତେ କବର ପାଖକୁ ନେଇଗଲେ । ସେ କହିଲେ - ଏଇନେ ଆଖିବୁଜି ଯାହା କହୁଛି ମୋ ସହିତ ପାଳି ଧର ।

ମାଆଙ୍କ ହାତ ଜାବୁଡ଼ି ଧରି ଆଖି ବୁଜିଲି ।

ମାଆ କହିଲେ—ହେ ପରମ ପିତା ପରମେଶ୍ୱର, ମୁଁ କ'ଣ କରିଛି ଜାଣେନା, ମୋତେ କ୍ଷମା କରନ୍ତୁ ।

ସେତିକି ମୁଁ ମୁଖରେ ଦୋହରାଇଲି ।

ଯଦିଓ ମୁଁ ବଲେଇ ଛୁଆଟିର ପ୍ରାଣ ହରଣ କରିଛି, ତଥାପି ଆପଣ ମୋ ପ୍ରତି ସଦୟ ହୁଅନ୍ତୁ ।

ଏତିକି ବି ମୁଁ ଅବିକଳ କହିଗଲି ।

ଅନ୍ଧାରଘରରେ ଶୋଇ ପଡ଼ିଲେ ମୋ ପ୍ରାଣ କଦାପି ହରଣ କରିବେ ନାହିଁ ମୁଁ କାତର ଆବେଦନ କଲି ।

ଏକ୍ଷଣି ମୁଁ ଆଖି ମେଲି ଅନାଇଲି । କିନ୍ତୁ ମୋ ଗଳାରୁ କିଛି ଶବଦ ବାହାରିଲା ନାହିଁ । ଭୟରେ ଅଚଳ ହୋଇଗଲି । ଅନ୍ଧାରରେ କାନ୍ଦିକାନ୍ଦି ଘର ଭିତରକୁ ଧାଇଁଗଲି । ମୋ ଶରୀରଟା ଦରଡ଼ା ପତର ପରି ଥରୁଥିଲା ।

ମାଆ ମୋତେ ପାଖକୁ ଡାକିଲେ । କିନ୍ତୁ ମୁଁ ଉତ୍ତରଦେଇ ପାରିଲି ନାହିଁ ।

ହଁ, ଏବେ ଟିକେ ସଜ ହେଉଛୁ । ମାଆ ମୋତେ କହିଲେ ।

ଶୋଇବାକୁ ଗଲାବେଳେ ମୋ ହୃଦୟ ଅନୁଶୋଚନାରେ ଭରିଗଲା । ଯାହାହେଉ ଭଗବାନଙ୍କୁ ପ୍ରାର୍ଥନା କଲି ଜୀବନରେ ଆଉ କେବେ ବଲେଇ ଛୁଆର ମୁହଁ ନ ଦେଖେଁ ।

## ॥ ତିନି ॥

ତାପରେ ଭୋକର ଅସହନୀୟ ଗୋପନ ଅଭିଯାନ ଆରମ୍ଭ ହେଲା । ମୁଁ ପହିଲେ ତା ଧାରୁଆ ଦାନ୍ତର କୋପ ବୁଝି ପାରି ନଥିଲି । ଆଗରୁ ଖେଳିବାକୁ ଗଲାବେଳେ ମୁଁ ଅନେକ ଦିନ ଭୋକର ଜ୍ୱାଳା ଅଳପ ବହୁତ ଅନୁଭବ କରୁଥିଲି । ଏବେ ପ୍ରାୟ ରାତିରେ ମୋ ନିଦ ଭାଙ୍ଗିଯିବାକୁ ଲାଗିଲା । ଉଠି ପଡ଼ିଲେ ମାଲୁମ ହେଉଥିଲା, ଯେମିତି ସେହି ଭୟଙ୍କର ଆଖି ଦୁଇଟା ମୋତେ କଟମଟ କରି ଅନାଇ ରହିଛି । ଆଗରୁ ଭୋକ ସହିତ ମୋର ମାମୁଲି ପରିଚୟ ଥିଲା । ଏଥି ପାଇଁ ଅବଶ୍ୟ ବାରବାର ଖାଇବାକୁ ମାଗୁଥିଲି । ଗୁଣ୍ଡାଏ ଦୁଇ ଗୁଣ୍ଡା ଖାଇଦେଲେ ଭୋକ ମରି ଯାଉଥିଲା । କିନ୍ତୁ ଏହି ନୂଆ ଧରଣର ଭୋକ ନିକଟରେ ମୁଁ ପରାଜିତ, ବଦରାଗି ଓ ଜିଦଖୋର ହୋଇଗଲି । ଏବେ ଖାଇବାକୁ ମାଗିଲେ ମାଆ ଚାହା ପିଆଲଟା ବଢାଇ ଦେଉଥିଲେ । ସେତିକି ପିଇଦେଲେ ଭୋକଟା କିଛି ସମୟ ଉପଶମ ହେଉଥିଲା । କିନ୍ତୁ କିଛିସମୟ ପରେ ଭୋକର ଉତ୍କଟ ଦାଉ ଜାତ ହେଉଥିଲା । ଖାଲିପେଟରେ ମୁଁ ଗଁ ଗଁ ହେଉଥିଲି, ଆଖି ଦୁଇଟା କଷାଳିଆ, ନିଦ ପାରି ଯାଉଥିଲା, ଖେଳାଖେଳିରେ ମୋର ଆଗ୍ରହ ରହୁ ନଥିଲା । ମୁଁ ଚୁପ୍‌ଚାପ ଭାବିବାକୁ ଲାଗିଲି, ମୋର କଅଣ ହେଲା ?

ଦିନେ ଦି ପହରେ ମାଆଙ୍କୁ କହିଲି—ମୋତେ ଖାଇବାକୁ ଦିଅ, ମାଆ ।

ମାଆ ଜବାବ ଦେଲେ—ଟିକିଏ ରହ, ବାବା ।

ନା, ଏଇନେ ମୋତେ ଖାଇବାକୁ ଦିଅ ।

ଘରେ ଯେ କିଛି ଖାଇବାକୁ ନାହିଁ—ମାଆ ବିରସ ମୁଖରେ ଜଣାଇଲେ ।

କାହିଁକି ନାହିଁ ?

କିପରି ସେଇଟା ତୋତେ ବୁଝାଇବି ?

ମୋତେ ଯେ ଭାରି ଭୋକ ଲାଗୁଛି ମାଆ — ମୁଁ କାନ୍ଦି କାନ୍ଦି ହୋଇ କହିଲି ।

ଟିକିଏ ରହ; ଯଦି ଭଗବାନ ଆମ ଉପରେ ସୁନଜର ଢାଳନ୍ତି !





ଭଗବାନ କେବେ ପୁନଜନ୍ମ ଛାଡିବେ ?

ଜାଣେନା ।

କିନ୍ତୁ ଭୋକରେ ଯେ ମୋ ପେଟ ଜଳୁଛି, ମାଆ ।

ମାଆ ଜାମାପଟା ସଫା କରୁଥିଲେ, ଟିକିଏ ରହିଗଲେ, ଆଖି ଟେକି ମୋତେ ଅନାଇଲେ । ତାଙ୍କ ଆଖି ଲୁହରେ ଛଳ ଛଳ ହେଉଥିଲା । ସେ ପଚାରିଲେ—ତୋ ବାବା କେଉଁଠି ଜାଣିଛୁ ?

ମୁଁ କଟମଟ କରି ତାହାଙ୍କୁ ଅନାଇ ରହିଲି । ସତରେ ବାବାତ ଢେରଦିନ ହେଲା ଶୋଇବା ଲାଗି ଘରକୁ ଆସୁ ନାହାନ୍ତି । କାରଣଟା ମୋତେ ମାଲୁମ ନ ଥିଲା ।

ଜବାବ ଦେଲି, ଜାଣେନା ।

ତାହାହେଲେ ଆମକୁ ଆଉ କିଏ ଖାଇବାକୁ ଯୋଗାଇ ଦେବ ? ମାଆ ପୁଣି ପଚାରିଲେ ।

କାହିଁକି ? ବାବା ତ ବରାବର ଆମକୁ ଖାଇବାକୁ ଦେଉଥିଲେ ।

ସେଟା ଅବଶ୍ୟ ସତ । କିନ୍ତୁ ତୋ ବାବା ଯେ ଏଠି ନାହାଁନ୍ତି ।

କୁଆଡେ ଯାଇଛନ୍ତି ?

ଜଣା ନାହିଁ ।

ମୋତେ ଟିକେ ଭୟ ହେଲା ଲାଗୁଛି । କହି ମୁଁ ଗୋଡ ହାତ ଛୁଟି କାନ୍ଦିବାକୁ ଲାଗିଲି ।

ଦେଖେ ଗୋଟାଏ କିଛି କାମ ଦାମ ଯୋଗାଡ କରିବାକୁ ପଡିବ । ସେତେଦିନ ଯାଏ ତୁମକୁ ସବୁର କରିବାକୁ ହେବ । ମାଆ ମୋତେ ଲୁହ ଛଳ ଛଳ ଆଖିରେ ବୁଝାଇ ଦେଲେ ।

ଦିନକୁ ଦିନ ଭୋକର ଦାଉ ସହିତ ବାବାଙ୍କ ମୂର୍ତ୍ତି ମୋ ମାନସ ପଟରେ ଲିଭି ଯିବାକୁ ଲାଗିଲା ।

ଅବଶେଷରେ ମାଆ ପାଚକାର ପାଇଁଟିଏ ପାଇଲେ । ଆମ ସାମନାରେ ଖଣ୍ଡିଏ ପାଉଁରୋଟି ଓ ମଟର ଶୁଖୁଆ ଥୋଇଦେଇ ମାଆ ନିତ୍ୟ ସକାଳେ କାମକୁ ବାହାରି ଯାଉଥିଲେ । ମୁଁ ଓ ଭଉଣି ଏକା ଘରେ ରହୁଥିଲୁ । ମାଆ ସନ୍ଧ୍ୟାବେଳେ ଧଇଁସଇଁ

ହୋଇ ଘରକୁ ଫେରୁଥିଲେ, ଖୁବ୍ କାନ୍ଦୁଥିଲେ, ଆଉ ଆମକୁ ପାଖକୁ ଡାକିନେଇ ବୁଝାଉଥିଲେ-ତୁମରଡ଼ ଆଉ ବାବା ନାହାଁନ୍ତି । ଏଣିକି ତୁମେ ଅନ୍ୟମାନଙ୍କ ପରି ଚଳି ପାରିବ ନାହିଁ । ଏଥର ନିଜକୁ ସବୁ କିଛି ଶିଖି ନେବାକୁ ପଡ଼ିବ ।

ଏହାଶୁଣି ମୋ ମନରେ ଭୟ ଉପୁଜିଲା । ତେବେ ମାଆଙ୍କ କଥା ମାନିବାକୁ ମୁଁ ଶପଥ ନେଲି । ଯେତେବେଳେ ମାଆଙ୍କୁ ପଚାରେ, ବାବା କୁଆଡେ ଯାଇଛନ୍ତି, ସେ ମୋତେ ଖାଲି ବୁଝାଇ ଦିଅନ୍ତି । ବଡ଼ହେଲେ ବଲେ ବଲେ ସେ କଥା ବୁଝି ପାରିବୁ ।

ଦିନେ ସଞ୍ଜବେଳେ ମାଆ ମୋତେ କହିଲେ- ଏଣିକି ତୋତେ ବଜାରକୁ ଯିବାକୁ ହେବ । ସେ ମୋତେ ନେଇ ମୋଡ଼ର ଦୋକାନଟା ଦେଖାଇ ଦେଲେ ।

ବାବାଙ୍କ ପରି ମୁଁ ଟିକିଏ ବଡ଼ ହୋଇ ଯାଇଥିଲି ବୋଲି ମୋର ଖୁବ ଗରବ ହେଲା । ପର ଦିନ ସକାଳରେ ଝୁଡ଼ିଟା ହାତରେ ଝୁଲାଇ ମୁଁ ଦୋକାନ ଆଡେ ଗଲିଲି । ଗଳିର ମୋଡରେ ହାଜର ହେଲାକ୍ଷଣି ଦଳେ ଟୋକା କୁଆଡୁ ଧାଇଁଆସି ମୋତେ ଘେରିଗଲେ । ସେମାନେ ମୋତେ ଧକ୍କା ମାରି ତଳେ ପକାଇଦେଲେ, ମୋ ଝୁଡ଼ିଟା ଛଡ଼ାଇନେଲେ, ପଇସାତକ କାଢ଼ି ନେଲେ, ଆଉ ଆମ ଘରଯାଏ ମୋତେ ଖେଦିଆଣିଲେ । ସଞ୍ଜବେଳେ ମାଆ କାମରୁ ଘରକୁ ଫେରିଲେ । ମୁଁ ତାହାଙ୍କୁ ଏସବୁ କଥା ଜଣାଇଲି । ସେ ମୁହଁରେ କିଛି କହିଲେ ନାହିଁ । କେବଳ ଗୋଟେ କାଗଜଟିରେ କ'ଣ ସବୁ ଲେଖି ଏବଂ ଆଉ କିଛି ପଇସା ଦେଇ ପୁଣି ମୋତେ ସେଇଠାର ଦୋକାନକୁ ପଠାଇଲେ । ମୁଁ ଡରି ଡରି ସଡ଼କ ଉପରକୁ ଆସି ଦେଖିଲି ସେହି ଟୋକାମାନେ ସେତେବେଳେ ଖେଳୁଛନ୍ତି । ତେଣୁ ଘରକୁ ପଳାଇ ଆସିଲି ।

ମାଆ ପଚାରିଲେ—କାଅଣ ହେଲା ?

ମୁଁ ଥରି ଥରି ଜବାବ ଦେଲି—ସେହି ଟୋକା ଗୁଡ଼ାକ, ମାଆ । ସେମାନେ ଫେରି ମୋତେ ମାରିବେ ।

ତୁ ଏମିତି ଡରିଲେ କାଅଣ ଚଳିବ ? ଫେର୍ ଯାଆ । ମୋତେ ଡର ମାଡୁଛି, ମାଆ ।

ମାଆ ହୁକୁମ ଦେଲେ— ଯାଅ. ସେମାନଙ୍କୁ ମୋଟେ ଡରାଇବୁ ନାହିଁ ।

ଘରୁ ବାହାରି ମୁଁ ସଡକରେ ଧୀରେ ଧୀରେ ପାଦ ପକାଇ ଚାଲିଲି । ମନେ ମନେ ଭଗବାନଙ୍କୁ ଡାକିଲି । କିନ୍ତୁ ପାଖା ପାଖି ହେଲାରୁ ଜଣେ ଟୋକା ରଡ଼ି ଛାଡ଼ିଲା—ହେଇରେ, ସେଟା ଫେର ଆସିଲାଣି ।

ସେମାନେ ମୋ ଆଡକୁ ଖେଦି ଆସିବାରୁ ମୁଁ ଏକା ନିଃଶ୍ୱାସେ ଘର ମୁହାଁ ଧାଇଁବାକୁ ଲାଗିଲି । ତଥାପି ସେମାନେ ମୋତେ ଧରି ତଳେ ପକାଇ ଦେଲେ । ମୁଁ ଗୋଡ ହାତ ଛାଟିଲି, ରଡ଼ି ଛାଡ଼ିଲି, ଢେର କାକୁତି ମିନତି କଲି । କିନ୍ତୁ ସେମାନେ ମୋ ହାତରୁ ପଇସାତକ ଛଡାଇ ନେଲେ, କେତେ ଥାପଡ ବସାଇଲେ, ମୋ ଗୋଡ ଟାଣିଟାଣି କିଛି ବାଟ ଘୋଷାରି ନେଲେ । କାନ୍ଦି କାନ୍ଦି ମୁଁ ଘରକୁ ଫେରି ଆସିଲି ।

ମାଆ ଦୁଆର ମୁହଁରେ ଛିଡା ହୋଇଥିଲେ । ମୁଁ ଧକେଇ ଧକେଇ ତାଙ୍କୁ ସବୁ କଥା ଜଣାଇଲି ।

ଘର ଭିତରକୁ ପଶି ଯାଉଥିଲି । ମାଆ ଚଢା ଗଳାରେ ବାରଣ କଲେ—ସେଇଠି ରହ, ଭିତରକୁ ଯାଆ ନା । ଏଣିକି ନିଜକୁ ସମ୍ଭାଳି ଚଳିବାକୁ ଶିଖ । ଆଜି ତୋତେ ସେଇଟା ଭଲକରି ଶିଖାଇ ଦେବ ।

ମୁଁ ଭୟରେ କାଠ ପାଲଟି ଗଲି ।

ମାଆ ଘର ଭିତରକୁ ଚାଲିଗଲେ । ମୁଁ ବାହାରେ ଭୟରେ ଅପେକ୍ଷା କଲି । ମାଆ କିଛି ପଇସା ଓ ଗୋଟିଏ ନୂଆ ଥଳା ନେଇ ଫେରି ଆସିଲେ । ସେ ହାତରେ ଖଣ୍ଡିଏ ଲମ୍ବା ମୋଟା ଲାଠି ମଧ୍ୟ ଧରିଥିଲେ ।

ମାଆ ମୋତେ ତାଗିଦ କଲେ—ନେ, ପଇସା ଓ ଥଳା ଧର, ଆଉ ଏ ଲାଠିଟା । ଦୋକାନକୁ ଯାଇ ଜିନିଷପତ୍ର ସବୁ ନେଇଆ । ଯଦି ସେଇ ଟୋକା ଗୁଡାକ ପୁଣି ତୋତେ ଗୋଡାନ୍ତି, ତାହାହେଲେ ଏହି ଲାଠିରେ ସେମାନଙ୍କୁ ସାବାଡ କରିଦେବୁ ।

ମୋତେ ଭାରି ଡର ମାଡୁଛି, ମାଆ—ମୁଁ ବଡ ବ୍ୟାକୁଳରେ ଗୁହାରି କଲି ।

ମାଆ ମୋ କଥା ମୋଟେ କାନକୁ ନେଲେ ନାହିଁ । ଓଲଟି ସେ ମୋତେ ଧମକାଇଲେ—ଆଜି ଦୋକାନରୁ ଜିନିଷପତ୍ର ସବୁ ନ ଆଣିଲେ, ତୁ ଘରକୁ ପଶିପାରିବୁ ନାହିଁ, କହି ଦେଉଛି ।

ସେମାନେ ଯେ ଏତେ ଜଣ, ମତେ ମାରଧର କରିବେ । ମୁଁ କାନ୍ଦିବାକୁ ଲାଗିଲି ।

ତାହାହେଲେ ସଡକ କଡରେ ପଡିଥିବୁ, କଦାପି ଘରକୁ ପଶି ପାରିବୁ ନାହିଁ । ଆଜି କିଛି ନଆଣିଲେ, ତୋ ପିଠିରୁ ଛାଲ ଉତାରି ଦେବି, ଜାଣିଥାଅ ।

କାନ୍ଦି କାନ୍ଦି ଜଣାଇଲି—ମାଆ, କାଲିସବୁ ଆଣିଦେବି ।

କିନ୍ତୁ ମାଆ ମୋ କଥା ମୋଟେ କାନକୁ ନେଲେ ନାହିଁ । ସେ ଏଇଟି ହୁକୁମ ଦେଲେ—ନା ଏଇନେ ତୋତେ ଯିବାକୁ ହେବ । ନୋହିଲେ ତୋ ଦେହରୁ ଛାଲ ଉତାରି ଦେବି ।

ମାଆ ଦରଜା କବାଟ କିଳିଦେଲେ । ମୁଁ ଭୀଷଣ ଭୟରେ ଥରିଲି । ଅନ୍ଧାରୁଆ ସଡକରେ ମୁଁ ଏକା ପାଖଆଖରେ ସେଇ ଟୋକା ଦଳଟା ବାହାରେ ଓ ଘରେ ମାଡର ଭୟ । ଦୁଇଭୟ ଦାଗରେ ବିପଦ, କାନ୍ଦି କାନ୍ଦି ଲାଠିଟାକୁ ଜୋରରେ ଜାବୁଡି ଧରିଲି । ସଡକର କଡେ କଡେ ଧୀରେ ଧୀରେ ଚାଲିଲି ।

ମୋ ଉପରେ ନଜର ପଡିଲା କ୍ଷଣି ସେଇ ଟୋକାଏ ଏକା ସାଙ୍ଗରେ ରଡ଼ି ଛାଡିଲେ—ଆରେ, ସେଇ ପିଲାଟା, ଫେର୍ ଆସିଲାଣି ।

ସେମାନେ ଧାଇଁଆସି ମୋତେ ଘେରି ଗଲେ ।

ସାବଧାନ, ମାରି ପକାଇବି, କହୁଛି—ଲାଠିଟା ବାଗେଇ ଧରି ମୁଁ ପାଟି କଲି । ତଥାପି ସେମାନେ ମୋ କଡକୁ ଲାଗି ଆସିଲେ । ଭୟରେ ଦିଗ ହରା ହୋଇ ମୁଁ ଲାଠିଟାକୁ ବୁଲାଇବାକୁ ଲାଗିଲି । ଠକ୍ କରି ଗୋଟାଏ ଆବାଜ ହେଲା । ହୁଏତ ଜଣେ ଟୋକାର ମଥାରେ ଲାଠି ବାଜିଲା । ଆଉ ଜଣେ ଟୋକାର ମଥାରେ ପାହାରେ ଦେଲି, ତାପରେ ଆଉ ଜଣକୁ । ରହିଗଲେ କାଳେ ସେମାନେ ପୁଣି ମୋତେ ଆକ୍ରମଣ କରିବେ, ଏହି ଆଶଙ୍କାରେ ଆଖି ବୁଜି ମୁଁ ବରାବର ଲାଠି ବୁଲାଇବାକୁ ଲାଗିଲି । ଇତି ମଧ୍ୟରେ ମୋ ହାତରୁ ତେଜରାତି ଦୋକାନର ଟଙ୍କା ଓ ପଇସାତକ ତଳେ ପଡିଗଲା ।

ତଥାପି ମୁଁ ଅବିରାମ ଲାଠି ଚଳାଇଲି । ତହୁଁ ସେମାନେ ମଥାରେ ହାତ ମାରି ହାହା ହାହା ଡାକ ଛାଡି ଖସି ପଳାଇଲେ । ସେମାନେ ଜୀବନରେ କେବେ ଏପରି ମାଡ ଖାଇ ନଥିବେ । ସେଠି ଛିଡା ହୋଇ ମୁଁ କିଛି ସମୟ

ଧକେଇଲି । ଦେଖିଲି, ଆଉ କେହି ମୋ ପାଖରେ ନାହାନ୍ତି । ତହୁଁ ସେମାନଙ୍କୁ ପଛରୁ ଗୋଡ଼ାଇଲି । ସେମାନେ ଅନ୍ତରଛରେ ଡାକ ଛାଡ଼ିବାରୁ ଘରର ଲୋକେ ବାହାର ଆସିଲେ । ଲାଠି ଦେଖାଇ ମୁଁ ସେମାନଙ୍କୁ ମଧ୍ୟ ଧମକାଇଲି । ତତକ୍ଷଣେ ସେମାନେ ଡରରେ ଘର ଭିତରକୁ ପଶିଗଲେ । ସଡ଼କରେ ଟଙ୍କା ଓ ପଇସା ପଡ଼ିଥିଲା, ସେସବୁ ଗୋଟାଇ ନେଇ ମୁଁ ଦୋକାନ ଆଡ଼େ ଗଲି । ଘରକୁ ଫେରିଲା ବେଳେ ପୁଣି ଲାଠିଟାକୁ ଜାବୁଡ଼ି ଧରିଲି । କିନ୍ତୁ ସେମାନଙ୍କର ଦେଖା ଆଉ ମିଳିଲା ନାହିଁ ।

ସେହି ଦିନ ରାତିରେ ମେମ୍‌ଫିସ୍‌ ସହରର ରାଜପଥରେ ମୋର ନିଜ ଅଧିକାର ହାସଲ କରି ମୁଁ ଘରକୁ ବାହୁଡ଼ିଲି ।

—※—

## ॥ ଚୋରି ॥

ମାଆ ନଜିକେ ଘରେ ରୋଷେଇ କରୁଥିଲେ । ବେଳେ ବେଳେ ସେ ଆମକୁ ସେଠାକୁ ନେଇ ଯାଉଥିଲେ । ରୋଷେଇ ଘରର ଗୋଟାଏ କୋଣରେ ଚୁଲା ହୋଇ ଆମେ ତାଙ୍କର ସବୁ କାମଦାମ ଦେଖୁଥିଲୁ । ସେ ବରାବର ଏଣେ ତେଣେ ଧାଁ । ଧାପଡ଼ କରୁଥିଲେ । କେତ୍ଲୀ ପାଖରୁ ବାସନକୁସନ ଧୋଇବା ଜାଗାକୁ, ସେଠାରୁ ଖାଦ୍ୟ ରଖା ଆଲମାରୀ ପାଖକୁ, ସେଠୁ ଭୋଜନ ଟେବୁଲ ପାଖକୁ । ସେସବୁ ଦେଖିଲା ବେଳେ ଆମ ପେଟ ଭିତରେ ଆହୁଟ ପାହୁଟ ହୋଇଯାଏ । ମାଆ କାମ କଲା ବେଳେ ରୋଷ୍ଟ ମେକରଙ୍କ ଷ୍ଟେପେଲ ପାଖେ ଠିଆ ହୋଇ ରହିବାକୁ ମୋତେ ଭାରି ଭଲ ଲାଗୁଥିଲା । କାରଣ ଟିଣ୍ଡେ ଦୁଖଣ୍ଡ ମାଂସ କି କିଛି ରୋଟି ମୋ କପାଳରେ ଜୁଟି ଯାଉଥିଲା । ରନ୍ଧା ଖାଦ୍ୟଗୁଡ଼ିକର ବାସନା ମୋ ନାକରେ ଆସି ବାଜୁଥିଲା । ସେ ସବୁ ଚାଖି ଦେବାକୁ ମୋର ଭାରି ମନ ହେଉଥିଲା ।

କିନ୍ତୁ ସେସବୁ ଯେ ଆମ ଲାଗି ନୁହେଁ, ଏ କଥା ମନେ ପଡ଼ିଲା କ୍ଷଣି ମୋତେ ଭାରି ଖରାପ ଲାଗୁଥାଏ ।

ସଞ୍ଜବେଳେ ମାଆ ଗରମ ଗରମ ଖାଦ୍ୟର ପାତ୍ରଗୁଡ଼ିକ ଭୋଜନ କୋଠରୀକୁ ନେଇ ଯାଉଥିଲେ । ଅନେକ ଗୋରା ସାହେବ-ମେମ୍ ଆସି ସେଠାରେ ଠୁଳ ହୁଅନ୍ତି, ଟେବୁଲକୁ ଘେରି ବସି କରି ଖାଆନ୍ତି, ଉସରଟିଆ କଥା ଭାଷା ହୁଅନ୍ତି, ହସି ହସି ଗଡ଼ି ଯାଆନ୍ତି । ସେମାନେ ଖାଇସାରି ଉଠିଗଲେ, ପାତ୍ରରେ ଯାହା ଛାଡ଼ି ଦେଇଥାଆନ୍ତି, ଆମେ ଦି ଭାଇ ସେତକ ପରମ ଆନନ୍ଦରେ ଖାଇଦେଉଁ । ନୋହିଲେ ଅନ୍ୟ ଦିନ ପରି ଖାଲି ରୋଟି ଓ ସୁପା ଆମ କପାଳରେ ଜୁଟୁଥିଲା ।

କେତେ ଦିନ ପରେ ମାଆ ଆମ ଦି ଭାଇଙ୍କୁ ଜଣେ କଳା ଲୋକର ଘରେ ବୁଢୀଟିର ଜିମାରେ ରଖି ଦେଇ କାମକୁ ଚାଲି ଯାଉଥିଲେ ।

ସେହି ପଡ଼ାର ସାନ ସାନ ପୁଅ ଝିଅମାନେ ନିତି ବିଦ୍ୟାଳୟକୁ ଯାଆନ୍ତି । ଉପରଓଳି ଫେରିଲା ବେଳେ ସେମାନେ ଆମ ସହିତ କିଛି ସମୟ ଖେଳନ୍ତି । ସେମାନେ ବହିଖାତାଗୁଡ଼ିକ ସଡ଼କ କଡ଼ରେ ରଖି ଦିଅନ୍ତି । ସେହି ସବୁ ବହିରୁ କେତେ ଖଣ୍ଡ ବାଛି ନେଇ ମୁଁ ପୃଷ୍ଠା ପରେ ପୃଷ୍ଠା ଲେଉଟାଇବାକୁ ଲାଗେ । କଳା କଳା ଅକ୍ଷରଗୁଡ଼ିକୁ ଅନାଇ ଅବାକ ହୋଇଯାଏ । ମୁଁ ସେମାନଙ୍କୁ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ହଇରାଣ କରେ ।

ମୋର କିଛି ଅକ୍ଷର ପରିଚୟ ହେବାରୁ, ମୁଁ ବି ସେମାନଙ୍କ ପରି ଲେଖା ପଢା ଶିଖିବା ଲାଗି ଦିନେ ମାଆଙ୍କୁ ଜଣାଇଲି । ମାଆ ବି ମତ ଦେଲେ । ପିଲାମାନଙ୍କ ବହି ହାତରେ ପଡ଼ିଲେ ମୁଁ ପଢିବାକୁ ଲାଗେ । ଦିନକୁ ଦିନ ମୋର କୌତୂହଳ ବଢିବାକୁ ଲାଗିଲା । ଏପରି ହାଲତ ହେଲା ଯେ, ଦିନ ସାରା ଖଟି ଖଟି ମାଆ ଘରକୁ ଫେରି ଆସିଲେ, ମୁଁ ତାହାଙ୍କୁ ନାନା ରକମର ପ୍ରଶ୍ନ ପଚାରି ପଚାରି ନସ୍ୟାନ୍ତ କରିଦିଏ । ଦିନେ ଦିନେ ମାଆ ଚୁପ ରହନ୍ତି ।

ଦିନେ ଶୀତୁଆ ସକାଳେ ମାଆ ମୋତେ ବିଛଣାରୁ ଉଠାଇ କହିଲେ— ମୁଁ ତୋ ଭାଇକୁ ସାଙ୍ଗରେ ନେଇ କାମକୁ ଯାଉଛି, ବାଟରେ କୋଇଲାବାଲାକୁ ଆମ ଘରେ କୋଇଲା ଦେବାକୁ ମୁଁ କହିଯିବି, ତୁ ଯେମିତି ଘରୁ କୁଆଡ଼େ ଚାଲି ନଯାଉ । କୋଇଲାର ଦାମ ଓ ଟଙ୍କା ସେ ରଖି ଦେଇଗଲେ ।

କିଛି ସମୟ ପରେ କୋଇଲାବାଲା ଆସିଲା, ତାହାଙ୍କୁ ଟଙ୍କା ଓ ଚଠା ଦେଲି, ସେ କୋଇଲା ନେଇ ଆସିଲା ।

ତାପରେ କୋଇଲାବାଲା ମୋତେ ପଚାରିଲା—ଶୀତ ଲାଗୁଛି କି ?

ମୁଁ ଥର ଥର ଜବାବ ଦେଲି—ହଁ ।

ତକ୍ଷଣେ ସେ ଚୁଲ୍ଲୀ କଡରେ ବସି ପଡିଲା, ନିଆଁ ଲଗାଇଲା, ତମାଖୁ ଖାଇଲା ।

ସେ ମୋତେ ପଚାରିଲା—କୁହ ତ, ଏହି କୋଇଲା ଲାଗି ମୋତେ କେତେ ଦାମ୍ ନେବାକୁ ହେବ ?

ଜାଣେ ନା—ଜବାବ ଦେଲି ।

ଏଁ, ତୁମେ ଗଣି ଜାଣ ନାହିଁ ? ତାହା ହେଲେ ଗୋଟାଏ କାମ କର । ପହିଲେ ଭଲ କରି ଶୁଣ, ତାପରେ ମୁଖେ ମୁଖେ ମୋ ସହିତ କହିଯାଅ ।

ସେ ଏକରୁ ଦଶ ଯାଏ ଗଣିଲା । ମୁଁ ମନ ଦେଇ ଶୁଣିଲି । ସେ ମୋତେ ଥରେ ଗଣିବାକୁ କହିବାରୁ, ମୁଁ ବି ଗଣି ଗଲି । ତାପରେ ସେ କୋଡିଏ, ତିରିଶି, ଚାଳିଶି ଇତ୍ୟାଦି ସଂଖ୍ୟାଗୁଡ଼ିକ ମୋତେ ମୁଖସ୍ଥ କରାଇଲା । ପ୍ରାୟ ଘଣ୍ଟାକ ଭିତରେ ମୁଁ ଶହେ ଯାଏ ଗଣି ଶିଖିଗଲି । କାଳେ ଭୁଲିଯିବି, ସେଥି ପାଇଁ ମୁଁ ବାର ବାର ସେସବୁ ସଂଖ୍ୟା ଡାକିବାକୁ ଲାଗିଲି । ରାତିରେ ମାଆ କାମରୁ ଫେରିଲେ । ମୁଁ ତାହାଙ୍କୁ ଶହେ ଯାଏ ସଂଖ୍ୟା ଗଣି ଶୁଣାଇଲି । ସତରେ ସେ ଅବାକ୍ ହୋଇ ଗଲେ । ତା ପରେ ସେ ମୋତେ ପାଠ ଶିଖାଇଲେ ଏବଂ କେତେ ରକମର ଗପ ଶୁଣାଇବାକୁ ଲାଗିଲେ । ପ୍ରତି ରବିବାର ଦିନ ମାଆଙ୍କ କଡରେ ବସି ମୁଁ ଖବର କାଗଜରୁ ଶବ୍ଦର ବନାନ ସବୁ ଠିକ୍ ଭାବରେ ଲେଖିବାକୁ ଆରମ୍ଭ କଲି ।

ଏଣୁ ତେଣୁ ଗୁଡାଏ ପ୍ରଶ୍ନ ପଚାରି ପଚାରି ମୁଁ ସଭିଙ୍କୁ ହଇରାଣ କଲି । ପଡାର ପାଖଆଖରେ ଯାହା କିଛି ଘଟୁ ପଛକେ, ସେଥିରେ ମୋର ଥରେ ହେଲେ ନାକ ଗଳାଇବା ଦରକାର । ଥରେ ମୁଁ ପହିଲେ ଜାଣି ପାରିଲି, 'ଗୋରା' ଓ 'କଳା' ଲୋକଙ୍କ ଭିତରେ ତଫାତ୍ କଅଣ । କେତେ ଗୋରା ନିରନାରୀଙ୍କୁ ତ ମୁଁ ବରାବର ସଡକରେ ଦେଖେଁ । ମୋ ପକ୍ଷରେ ସେମାନେ

ଅତ ମାମୁଲି ଧରଣର ଥିଲେ । ସେତେବେଳେ ମୁଁ ସେମାନଙ୍କ ସଂସ୍ପର୍ଶରେ ଆସି ନ ଥିଲି । ଦେହର ରଙ୍ଗ ଦୃଷ୍ଟିରୁ ମୋ ଅଈମାଆ ତ ଖୁବ୍ ଗୋରା ଥିଲେ । ତେବେ ତାହାଙ୍କୁ ' ଗୋରା ଲୋକ ' ବୋଲି କେବେ ମୋର ମନେ ହୋଇ ନ ଥିଲା । ଯେତେବେଳେ ପଡ଼ାରେ ସ୍ପଷ୍ଟ ହୋଇଗଲା ଯେ ଜଣେ ' ଗୋରା ଲୋକ ' ଜଣେ ନିଗ୍ରୋ ପିଲାକୁ ନିଷ୍ଠୁର ଭାବରେ ପିଟିଛି, ସେତେବେଳେ ମୋର ମନେ ହେଲା ଯେ ସେହି 'ଗୋରା ଲୋକଟି' ହୁଏତ ପିଲାଟିର ବାପା ହୋଇଥିବ ।

କିନ୍ତୁ ମାଆ ଆସି ଜଣାଇଲେ ଯେ ପ୍ରକୃତରେ ସେହି 'ଗୋରା ଲୋକଟି' ନିଗ୍ରୋ ପିଲାଟିର ବାପା ନୁହେଁ । ତେଣୁ ମୋ ମନରେ ଖଟକା ଲାଗିଲା ।

ମୁଁ ପଚାରିଲି—ମାଆ, ତାହା ହେଲେ ସେହି 'ଗୋରା' ଲୋକଟି ପିଲାଟିକୁ କାହିଁକି ବାଡେଇଲା ?

ମାଆ ଜବାବ ଦେଲେ—ତୁ ପିଲାଲୋକ, ଏସବୁ ସେଟା ବୁଝି ପାରିବୁ ନାହିଁ ।

ତାପରେ ମୁଁ ଢେର୍ ବେଳ ଯାଏ ଭାବିବାକୁ ଲାଗିଲି, ସେହି 'ଗୋରା' ଲୋକଟି କାହିଁକି ଭୁଲ୍ଚାଟାରେ ପିଲାଟିକୁ ମାରିଲା ? ଯେତେ ଭାବିଲେ ସୁଦ୍ଧା ସେଥିର ଅଳକୂଳ କିଛି ପାଇଲି ନାହିଁ । ସେହି ଦିନରୁ 'ଗୋରା' ଲୋକ ଦେଖିଲା କ୍ଷଣି ମୁଁ ତାହାକୁ କଟମଟ କରି ଅନାଇ ରହେ । ତେବେ ବୁଝିବାକୁ ଚେଷ୍ଟା କରେ, ସତରେ ସେମାନେ ଦେଖିବାକୁ କିପରି ?

ବିଦ୍ୟାଳୟରେ ମୁଁ ନାମ ଲେଖାଇଲି । ସେତେ ବେଳକୁ ମୋର ସେଠାରେ ନାମ ଲେଖାର ବୟସ ଗଡ଼ି ଯାଉଥିଲା । ବିଦ୍ୟାଳୟକୁ ପିନ୍ଧି ଗଲା ଭଲ ଜାମାପଟା ମଧ୍ୟ ମାଆ ମୋତେ କିଣି ଦେଇ ପାରିଲେ ନାହିଁ । ପ୍ରଥମ ଦିନ ପଡ଼ାର ପିଲାମାନଙ୍କ ସାଙ୍ଗରେ ଗଲି । ବିଦ୍ୟାଳୟ ପାଖରେ ମୋତେ ଭାରି ଡର ମାଡ଼ିଲା । ତେଣୁ ଘରକୁ ଫେରି ଯାଉଥିଲି । ସାଙ୍ଗ ପିଲାଏ ଛାଡ଼ିଲେ ନାହିଁ । ସେମାନେ ମୋ ହାତ ଧରି ଭିତରକୁ ଟାଣି ନେଲେ । ମୋ ଗଳା ଶୁଖିଗଲା, ଅନ୍ୟ ପିଲାମାନେ ମୋତେ କଟମଟ କରି ଅନାଇଲେ । ପିଲାଏ ପଢିବାକୁ ଲାଗିଲେ । ମୁଁ ବସି ରହି ସେସବୁ

ଦେଖିଲି । ମୁଁ ମନେ ମନେ ପାଠ ବି ତିଆରି କରି ନେଲି । କିନ୍ତୁ ମୋ ପାଳି ପଡ଼ିବାରୁ ମୋ ମୁଖରୁ କିଛି ବାହାରିଲା ନାହିଁ । ଅନ୍ୟମାନଙ୍କ ସାମନାରେ ମୁଁ ହଡବଡେଇ ଗଲି ।

ଯାହା କିଛି ଶୁଣିଲେ ହିଁ ମୋର ମନେ ରହିଯାଉଥିଲା । ମୋର ସ୍ମରଣ ଶକ୍ତି ପ୍ରଖର ଥିଲା । ଶିକ୍ଷକ ମୋ ନାମ ଧରି ଡାକିଲେ । ବହି ଧରି ଠିଆ ହେଲି । ଗୁଡ଼ାଏ ଅପରିଚିତ ପିଲାଙ୍କ ସାମନାରେ ମୋ ପାଟିରୁ ପଦେ ହେଲେ ଶବ୍ଦ ବାହାରିଲା ନାହିଁ ।



## ॥ ପାଞ୍ଚ ॥

ସକାଳେ ନିଦ ଭାଙ୍ଗିଗଲା ।

ମାଆ ଜଣାଇଲେ—ଆଜି ଆମକୁ ବିଚାରପତିଙ୍କ ଠାକୁ ଯିବାକୁ ହେବ । ସେ ତୋ ବାବାଙ୍କଠାରୁ ଆମର ଖୋରାକ ପୋଷାକର ଟଙ୍କା ଆଦାୟ କରିଦେବେ ।

କିଛି ସମୟ ପରେ ଆମେ ତିନି ଜଣ ଯାଇ ଗୋଟାଏ ବଡ଼ ହଲ ଘରେ ହାଜର ହେଲୁ । ଚଉଦିଗରେ ଅଜଣା ଲୋକମାନେ ଯାଉଆଉ ହେଉଥିଲେ । ସେମାନେ କି କଥାବାର୍ତ୍ତା ହେଉଥିଲେ ମୁଁ ଆଦୌ ବୁଝି ପାରିଲି ନାହିଁ । ତେଣୁ ମୁଁ ଏକାବେଳେ ହଡବଡେଇ ଗଲି ।

ଗୋଟିଏ ଉଚ୍ଚ ମଞ୍ଚ ଉପରେ ଗୋରା ବିଚାରପତି ବସିଥିଲେ । ହଲ ଘରେ ଏକ କୋଣରେ ବାବା ବସିଥିଲେ । ସେ ବାର ବାର ଆମକୁ ଅନାଇ ମୁରୁକି ମୁରୁକି ହସୁଥିଲେ । ମାଆ ମୋତେ ଓ ସାନ ଭାଇକୁ ତାଗିଦା କରିଦେଲେ, ଆମେ ଯେମିତି ବାବାଙ୍କ ମଧୁର ବଚନରେ ଭୁଲି ନ ଯାଉ ।

ବିଚାରକ କେତେ କଥା ପଚାରିବେ, ସେ ସବୁର ସଠିକ ଜବାବ ଦେବ । ମୁଁ ରାଜି ହେଲି ।

ଏତେ ବେଳେ ଏଠି ବସି ରହିଥିବାରୁ ମୋତେ ଭୋକ ଲାଗିଲା । ମାଆ ଶୁଖିଲା ବିସ୍କୁଟ ଆଣି ଦେଲେ, ଚୋବାଇବାକୁ ଲାଗିଲି, ଏଥର ଶୁଣିପାରିଲି ମାଆଙ୍କ ନାମ ଡକା ହେଲା । ମାଆ ଉଠିପଡ଼ି ଭେଁ ଭେଁ କାନ୍ଦିବାକୁ ଲାଗିଲେ, କିଛି ସମୟ ମୋଟେ କଥା କହି ପାରିଲେ ନାହିଁ । କାନ୍ଦଣାର ବେଗଟା କମିଯିବାରୁ ସେ କୌଣସି ମତେ ଜଣାଇଲେ—ତାହାଙ୍କ ସ୍ୱାମୀ ତାହାଙ୍କୁ ଓ ନିଜର ଦି ସାନ ସାନ ପୁଅଙ୍କୁ ଛାଡ଼ି ଚାଲି ଯାଇଛନ୍ତି । ଅନାଥ ଶିଶୁ ଦୁଇଟି ଏକ୍ଷଣି କିଛି ଖାଇବାକୁ ପାଉନାହାଁନ୍ତି । ସେ ଅତ୍ୟନ୍ତ ଦୁଃଖ କଷ୍ଟରେ ଦିନ କାଟୁଛନ୍ତି । ଶିଶୁଙ୍କର ଭରଣ ପୋଷଣର ସକଳ ଭାର ଏକା ତାହାଙ୍କୁ ବହନ କରିବାକୁ ପଡ଼ୁଛି ।

ମାଆଙ୍କର ଆବେଦନ ସରିଲା । ତା ପରେ ବାବାଙ୍କୁ ତଲବ କରାହେଲା ସେ ହଁଟର ହାଜର ହେଲେ । ତାହାଙ୍କ ମୁହଁରେ ସେହି ଚାପା ହସ । ସେ ମାଆଙ୍କୁ ଆଦର କରିବାକୁ ଚାହିଁଲେ । କିନ୍ତୁ ମାଆ ମୁଖ ଫେରାଇ ନେଲେ ।

ବାବାଙ୍କର କେବଳ ପଦଏ କଥା ମୁଁ ଶୁଣି ପାରିଲି—କଅଣ କରିବି ହଜୁର, ମୁଁ ତ ପ୍ରାଣ ପଣେ ଚେଷ୍ଟା କରୁଛି ।

ମାଆ ବସି କାନ୍ଦୁଥିଲେ, ଆଉ ବାବା ହସୁଥିଲେ । ଏହା ଦେଖି ମୁଁ ଅତ୍ୟନ୍ତ ବ୍ୟଥିତ ହେଲି । ଘରକୁ ଫେରିଆସି ମାଆ କହିଁ କହିଁ କାନ୍ଦିବାକୁ ଲାଗିଲେ । ସେ ବାରବାର ଯୋଖୁଥିଲେ ବିଚାରପତି ଏକତରଫା ବିଚାର କଲେ । ଅଦାଲତରେ ଅନ୍ୟାୟ ବିଚାର ପରେ ମୁଁ ବାବାଙ୍କ କଥା ଭୁଲିଯିବାକୁ ବସିଲି ଭୀଷଣ ଭୋକ ଲାଗିଲେ ମାଆ ଆମକୁ ପ୍ରାୟ ପଠେଇ ଦେଉଥିଲେ, ବାବାଙ୍କ ଅଫିସକୁ ଯାଇ ତାହାଙ୍କ ଠାରୁ କିଛି ପଇସା ମାଗି ଆଣିବାକୁ । କିନ୍ତୁ ମୁଁ ସେଥିରେ କୌଣସି ମତେ ରାଜି ହେଉ ନ ଥିଲି, ଏପରିକି ତାହାଙ୍କ ମୁଖ ଦେଖିବାକୁ ମୋ ମନ ମୋଟେ ବଳୁ ନ ଥିଲା ।

କେତେ ଦିନ ଜ୍ୱରରୁ ମାଆ ବେମାର ପଡ଼ିଲେ । ଦିନକୁ ଦିନ ଆମର ଖିଆପିଆର ସମସ୍ୟା ବଡ଼ ଜଟିଳହେଲା । ବେଳେ ବେଳେ ପଡ଼ଶାମାନେ ଆମକୁ

ଡାକ ନେଇ ଖୁଆଉଥିଲେ । ଆଈ ବି ମଝିରେ ମଝିରେ ଡାକରେ କିଛି ଟଙ୍କା ପଠାଉଥିଲେ ।

ଶୀତ କାଳ । ମୁଁ ନିତି ସକାଳେ ଉଠି ମୋଡର କୋଇଲା ଦୋକାନରୁ କିଛି କୋଇଲା କିଣି ଆଣୁଥିଲି । ମୁଁ କେତେ ଦିନ ବିଦ୍ୟାଳୟକୁ ଗଲି ନାହିଁ, ମାଆଙ୍କ ସେବାରେ ଲାଗିପଡ଼ିଲି । ଦିନେ ଆଈ ମାଆ ଆମ ଘରକୁ ଆସିଲେ । ମୁଁ ପୁଣି ବିଦ୍ୟାଳୟକୁ ଗଲି ।

ଆଈ ମାଆ ମାମୁଁ ଘରକୁ ଫେରିଲା ବେଳେ କିଛି ଟଙ୍କା ମାଆଙ୍କୁ ଦେଇଯାଇଥିଲେ । ସବୁକିଛି ଖରଚ ହୋଇଗଲା । ଘରଭଡ଼ା ସୁଦ୍ଧା ଦେଇ ପାରିଲୁ ନାହିଁ । ମାଆ ରୋଗଣା ଶରୀରରେ ସାହାଯ୍ୟ ମାଗି ବୁଲିଲେ । ଅବ-ଶେଷରେ ଗୋଟିଏ ଅନାଥ ଆଶ୍ରମ ଆମ ଦୁ'ଭାଇଙ୍କୁ ଆଶ୍ରୟ ଦେବାକୁ ରାଜି ହେଲା । ତେବେ କଥାର ରହିଲା, ମାଆ କାମ ଦାମ କରି ଆମର କିଛି ଖରଚ ବହନ କରିବେ ।

ଦିନେ ମାଆ ସଞ୍ଜବେଳେ ଜଣାଇଲେ ଆମେ ଏଣିକି ଆଉ କାନସାସର ଛିଲେନ ସହରରେ ମାଉସିଙ୍କ ଘରେ ଯାଇ ରହିବୁ । ଆଈ ମାଆ ଇତି ମଧ୍ୟରେ କାଟଚେଟର ମିସିସିପିର ଡାକ୍ସନ ସହରକୁ ଚାଲି ଯାଇଥିଲେ । ଗଲା ବେଳେ ବାଟରେ ଆମେ ତାହାଙ୍କୁ ଥରେ ଭେଟିବୁ । ଏହା ଶୁଣିଲାଠୁଁ ମୁଁ ଅଧୀର ହୋଇ ଦିନ ଗଣିବାକୁ ଲାଗିଲି । କରୁଣ ନିରବ ଆଶ୍ରମ ଜୀବନରୁ ବିଦାୟ ନେଉଛି ବୋଲି ମୋ ମନ ଆନନ୍ଦରେ କୁରୁକୁରୁ । ତହୁଁ ଜିନିଷପତ୍ର ସବୁ ବନ୍ଧାଛନ୍ଦା କରିବାରେ ଲାଗି ପଡ଼ିଲି ।

ଜାକ୍ସନ ସହରରେ ଆଈ ମାଆଙ୍କର ଚମତ୍କାର ଦୋତାଲା କୋଠା ସାତଟି କୋଠରୀ । ମାମୁଁ ଏଇଟା ଆଈମାଆଙ୍କ ସକାଶେ କିଣିଥିଲେ । ଆଈ ମାଆ ଜଣେ ନିଗ୍ରୋ ଝିଅକୁ ଘରେ ଆଶ୍ରୟ ଦେଇଥିଲେ । ତା ନାମ ଇଲା, ବିଦ୍ୟାଳୟରେ ଶିକ୍ଷୟିତ୍ରୀ । ଶାନ୍ତ, ଭଦ୍ର ସ୍ୱଭାବର ଝିଅଟିଏ । ସେ ପ୍ରାୟ ବରାବର ବସି ବହିପତ୍ର ପଢୁଥିଲା । ମୋର ଭାରି ଇଚ୍ଛା ହେଉଥିଲା ତା ପାଖକୁ ଯାଇ କହିବାକୁ, ସେ ଯାହା ପଢୁଛି ଥରେ ମୋତେ ଶୁଣାଉ । କିନ୍ତୁ ମୋର ସାହସ କୁଳାଉ ନ ଥିଲା । ଦିନେ ସେ ପଦାରେ ଦେଖିଲି, ଇଲା ବାରନ୍ଦାରେ ଏକା ବସି ଯେ କି ବହି ପଢ଼ୁଛି । ମୁଁ ତା ପାଖକୁ ଯାଇ ପଚାରିଲି

କଅଣ ପଢ଼ୁଛ, ଇଲୁ ?

ଇଲୁ ମୁହଁ ଟେକି ଜବାବ ଦେଲା—ଖଣ୍ଡିଏ ବାଜେ ବହି ।

ସେଥିରେ କଅଣ ଲେଖା ହୋଇଛି ?—ପୁଣି ମୁଁ ପଚାରିଲି ।

ଏଇନେ ମୁଁ କଅଣ ତୋତେ ନାଟକ ଉପନ୍ୟାସ ପଢ଼ି ଶୁଣାଇବି ? ତୋ ଆଈ ମାଆ ସେ ଭିତରୁ ଖେଦିଆସିବେ !

ତାହାଙ୍କୁ ମୁଁ ଖାତିର କରେନା—ଜୋର ଗଳାରେ କହି ପକାଇଲି ।

ଛି, ଛି, ଏମିତି ଖରାପ କଥା କହନ୍ତି ନାହିଁରେ, ଭାଇ—ଇଲୁ ମୋତେ ବୁଝାଇଲା ।

ହେଉ, କଅଣ ଲେଖା ଅଛି, ଥରେ କୁହନା—ମୁଁ ପୁଣି ଅନୁରୋଧ କଲି

ଇଲୁ ମୋତେ ସମଝାଇଲା— ବଡ ହେଲେ ତୁମେ ବହୁତ ବହି ପଢ଼ିବ, କେତେ କଥା ଜାଣି ପାରିବ ।

ଏକ୍ଷଣି ଜାଣି ପାରିବି ନାହିଁ କାହିଁକି ?—ପଚାରିଲି ।

ତା ପରେ ଇଲୁ ବହିଟି ମୋଡ ମାଡ଼ି ତଳେ ଥୋଇଦେଲା, ମୋତେ ପାଖକୁ ଡାକିଲା, ଆଉ ଧୀରେ ଗଳାରେ କହିବାକୁ ଲାଗିଲା । ମୁଁ ତା ମୁହଁକୁ ଅନାଇ ରହିଲି ।

"ନୀଳ ଦାଢ଼ିଆ ଅସୁର ଓ ସାତ ଭାରିଜା"ର କାହାଣୀଟି ଇଲୁ ଗପିବାକୁ ଲାଗିଲା । ମୁଁ ମନ୍ତ୍ରମୁଗ୍ଧ ହୋଇ ଶୁଣିଲି ।

ତା ମୁହଁର ପ୍ରତ୍ୟେକ କଥା ମୋ ଅନ୍ତରରେ ପ୍ରକୃତ ରୂପ ଧାରଣ କରୁଥିଲା । ସେହି କାହାଣୀର ସାରକଥା ହେଲା—ଜଣେ ନୀଳ ଦାଢ଼ିଆ ଅସୁର ସାତ ଜଣ ଅପରୂପ ସୁନ୍ଦରୀ ଯୁବତୀଙ୍କୁ ଫୁସୁଲାଇ ବାହା ହେଲା । ତା ପରେ ଜଣ ଜଣ କରି ସେମାନଙ୍କୁ ହତ୍ୟା କରି ଗୋଟିଏ ଅନ୍ଧାରୁଆ କୋଠରୀରେ ଟଙ୍ଗାଇ ଦେଲା । କାହାଣୀଟି ଶୁଣି ମୋ ଚଉଦଗର ଜଗତ ମୁଖର ହୋଇଗଲା, ଆଖି ସାମନାରେ ସବୁ କିଛିର ଚେହେରା ବଦଳିଗଲା ।

କାହାଣୀଟି ପ୍ରାୟ ଶେଷ ହୋଇ ଆସୁଥିଲା, ଠିକ୍ ଏତିକି ବେଳେ ଆଈ ମାଆ ଭିତରୁ ବାହାରି ଆସି ଗର୍ଜି ଉଠିଲେ—ରହ, ବଦମାସ ଝିଅ କେଉଁଠିକାର ! ମୁଁ ତୋତେ ଆଉ ଏ ଘରେ ମୋଟେ ଥାନ ଦେବି ନାହିଁ ।

ଆଈଙ୍କ ଅତର୍କିତ ଧମକରେ ମୁଁ ଚମକି ପଡ଼ିଲି । କିଛି ସମୟ ମୋର ଚେତା ପ୍ରାୟ ହଜିଗଲା ।

ଭୟ ଜଡ଼ିତ ଅଙ୍ଗେଇ ଅଙ୍ଗେଇ କହି ପକାଇଲି—ମୁଁ ଅତିଶୟ ଦୁଃଖିତ ଶ୍ରୀମତୀ ଉଇଲସନ୍ । ସେ ଖୁବ୍ ଜିଗର କରିବାରୁ ମୁଁ ତାହାକୁ ଗୋଟିଏ କାହାଣୀ ଶୁଣାଉଥିଲି ।

ହଁ, ସେ ଗୋଟିଏ ଦୁଧପିଆ ପିଲା ନା !—ଆଈ ପୁଣି ଧିକାରିଲେ ।

ଉହୁଁ ଭୟ ମଥା ପୋତି ତା କୋଠରୀରେ ପଶିଗଲା ।

ମୁଁ ପ୍ରତିବାଦ କଲି—ଭଲ ଯେ କାହାଣୀଟା ସାରି ନାହିଁ, ଆଈ । ଶେଷରେ କ'ଣ ହେଲା ମୁଁ ଶୁଣିବାକୁ ଚାହେଁ ।

ମୋ ମୁହଁ ଉପରେ ଫେର୍ କଥା କହୁଛୁ !—ଆଈ ମୋ ଗାଲରେ ଜୋରରେ ଗୋଟାଏ ଥାପଡ଼ ବସାଇ ଦେଲେ । ମୁଁ କହିଁ କହିଁ କାନ୍ଦି ପକାଉଥିଲି ।

ଆଈ ଜୋର ଧମକଟାଏ ଦେଲେ । ତାହାଙ୍କ ଗୋରା ମୁହଁଟି ଟିକିଏ କୁଞ୍ଚିତ ହେଲା, ଚଉଡ଼ା କପାଳରେ ବିରକ୍ତିର ରେଖା ଫୁଟିଲା । ତମା ତମା ଆଖି ଦୁଇଟିର ଜଳନ୍ତା ଦୃଷ୍ଟି ସେ ମୋ ଉପରକୁ ଫୋପାଡ଼ିଲେ ।

ମୁଁ ତାହାଙ୍କ କଥା ମାନି କୌଣସି ମତେ ରହି ପାରିଲି ନାହିଁ । କାହାଣୀ ଟାର ଶେଷ ଭାଗଟା ଶୁଣି ନ ପାରି ମୋ ମନ ହାହାକାର କରିବାକୁ ଲାଗିଲା ।

ତେଣୁ ମୁଁ ଦୃଢ଼ ଶପଥନେଲି, ବଡ଼ ହେଲେ ମୁଁ ଦୁନିଆର ପ୍ରଧାନ ଗପ-ଉପନ୍ୟାସର ବହିସବୁ ଅଲବତ କିଣିବି ଏବଂ ସେ ଗୁଡ଼ିକ ବେଗି ବେଗି ପଢ଼ି ସାରିଦେବି ।

—*—

# ॥ ଛଅ ॥

ଥରେ ଆମେ ପୁଟୁଳା ପୁଟୁଳି ଧରି ରେଲ ଷ୍ଟେସନରେ ଯାଇ ହାଜର ହେଲୁ। ଆର୍କାନସାସର ଗାଡ଼ିକୁ ଆମେ ଜଗେଇ ରହିଲୁ। ପହିଲେ ଦେଖିଲି, ଟିକେଟ ଘର ପାଖରେ ଦୁଇଟି ଧାଡ଼ିରେ ଯାତ୍ରୀମାନେ ଛିଡ଼ା ହୋଇଛନ୍ତି। ଗୋଟିଏ ଧାଡ଼ିରେ କେବଳ ଗୋରା ଲୋକମାନେ, ଅପରଟିରେ କଳା ଲୋକମାନେ। ଏଠାକୁ ଆସିଲା ଦିନରୁ ଏ ଜାତିର କଥା ମୋ ମନରେ ଦାଗ କାଟୁଥିଲା। ଏପରି ଗଭୀର ଉତ୍ପାତ୍ ମୋ ଜୀବନରୁ କଦାପି ଲିଭିବ ନାହିଁ। ଗାଡ଼ିକୁ ଚଢ଼ି ସେହି ବିଷୟଟି ଭଲ କରି ବୁଝି ପାରିଲି। ଆମେ ନିଗ୍ରୋମାନେ ଗାଡ଼ିର ଗୋଟାଏ ଗହଳି ଜାଗାରେ ଜମା ହୋଇଥିଲୁ, ଆଉ ଗୋରା ଲୋକେ ଗୋଟାଏ ଫାଙ୍କା ଜାଗାରେ ଆରାମରେ ବସି ରହିଥିଲେ। ତେବେ ଅସଲ ରହସ୍ୟଟା ମୋତେ ମାଲୁମ ନ ଥିଲା।

ମାଆଙ୍କୁ ପଚାରିଲି—ଥରେ ସେଠାକୁ ଯାଇ ସେମାନଙ୍କୁ ଦେଖି ଆସିବ ?

ମାଆ ଜବାବ ଦେଲେ—ଚୁପ୍, ସେ କଥା ମୁଖରେ ଧରନ୍ତି ନାହିଁ।

କାହିଁକି, ମାଆ ?

ବୋକାଙ୍କ ପରି କଥା କହ ନା, ଚୁପ ହୁଅ।

ଅନେକ ଦିନରୁ ମୁଁ ଲକ୍ଷ୍ୟ କରୁଥିଲି, ଗୋରା ଓ କଳା ଲୋକଙ୍କ ବିଷୟରେ କିଛି କଥା ପଚାରିଲେ ମାଆ ଭାରି ଚିଡ଼ି ଯାଉଥିଲେ। କାରଣଟା ମୁଁ ଠିକ୍ ଭାବରେ ବୁଝିପାରୁ ନଥିଲି। ଏହି ଦୁଇଟା ଅଲଗା ଜାତି ବରାବର ପାଖା ପାଖି ବାସ କରୁଛନ୍ତି। ଅଥଚ କେହି କାହାକୁ ଆଦୌ ଦେଖି ପାରୁ ନାହାନ୍ତି। ଏପରିକି ଭୁଲ୍‌ରେ ସୁଦ୍ଧା ଟିକିଏ ଛୁଆଁ ଛୁଇଁ ହେଉ ନାହାନ୍ତି। ଏଥିର ମତଲବଟା ବୁଝିବାକୁ ମୁଁ ଚେଷ୍ଟା କରୁଥିଲି।

ଆମେ ଏଲେନ୍‌ରେ ଯାଇ ପହଞ୍ଚିଲୁ। ଏଠାରେ ମାଗୀ ମାଉସୀଙ୍କ ଘରଟି ଗୋଟିଏ ବଡ଼ କୋଠା ଘର। ଚଉହଦିରେ ପାଚେରୀ ଘେରା।

ଙ୍କର ଖୁସି ହେଲା । ଆମକୁ ତ ଏଠି ମୋଟେ ଦିନ କେଉଁଟା ରହିବାକୁ ହେବ । ଗରମ ଦିନ । ମାଉସୀଙ୍କ ଘର ପାଖଦେଇ ଗୋଟାଏ ପଥ ଗାଁ ଆଡେ ଚାଲିଯାଇଛି । ଏ ପଟେ ଜଙ୍ଗଲୀ ଫୁଲ ଗଛ ଗୁଡାକ । ଚଉଦଗରେ କାଦୁଆ ଗନ୍ଧ । ଉଠି ସକାଳେ ମୁଁ ସେହି କାଦୁଆ ପଥରେ ଖାଲି ପାଦରେ ବହୁ ଦୂରକୁ ଚାଲି ଯାଉଥିଲି ।

ଟିକିଏ ଖରା ପଡ଼ିଲେ ମହୁମାଛି ସବୁ ଫୁଲଗଛରେ ଆସି ବସୁଥିଲେ । ହଠାତ୍ ମନକୁ ଆସିଲା—ଏ ପଟୁ ଏ ହାତ ଆଣି ମିଶେଇ ଦେଇ ମହୁମାଛିଟାକୁ ସେପରି ମାରି ଦିଆ ଯାଇ ପାରେ । ମାଆ ମୋତେ ଏପରି ଖରାପ କାମ କରିବାକୁ ବାରଣ କରିଥିଲେ—ମହୁମାଛି ଠାରୁ ମହୁ ମିଳେ, ତେଣୁ ତାହାକୁ ମାରିବା କଦାପି ଉଚିତ ନୁହେଁ । ତାହା ଛଡା ମହୁମାଛିକୁ ଗୋଡାଇଲେ ସେ ତା ଶୁଣ୍ଢଟା ଦେହରେ ଗଳାଇ ଦେବ । କିନ୍ତୁ ମାଆଙ୍କ କଥା ନ ମାନି ଦିନେ ସକାଳେ ଫୁଲ ଉପରୁ ଗୋଟିଏ ମହୁମାଛିକୁ ଧରିବାକୁ ଗଲାରୁ ସେଟା ମୋ ହାତ ମଝିରେ ଷୁଣ୍ଢ ଫୁଟାଇ ଦେଲା । ବିକଳରେ ରଡି ଛାଡି ମୁଁ ଘରକୁ ଧାଇଁଲି । ମାଆ କଠୋର ଗଳାରେ କହି ପକାଇଲେ—ଠିକ ହୋଇଛି, ଯେମିତ କାମକୁ ସେମିତ ସଜା । ସେହି ଦିନରୁ ମୁଁ ଆଉ କେବେ ମହୁମାଛି ଧରିଲି ନାହିଁ ।

ମାଉସୀଙ୍କ ଭୋଜନ ଟେବୁଲଟା ବହୁବର ନାନା ରକମ ଖାଇବା ଚିଜରେ ଭରପୂର ହୋଇଥାଏ । ସେସବୁ ଦେଖିଲେ ମୋର ଭୟ ହୁଏ, ଏ ବେଳା ସବୁତକ ଖାଇଦେଲେ ହୁଏତ ଆଉ ବେଳାକୁ କିଛି ନଥିବ । ତେଣୁ ମୁଁ ଖାଇବାକୁ ବସି ହଠାତ୍ ମାଉସୀଙ୍କୁ ପଚାରି ଦେଲି—ଯାହା ଇଚ୍ଛା ହେବ ସବୁ ଖାଇବି ତ ?

ମଉସା ଉଚ୍ଚରେ କହି ପକାଇଲେ—ହଁ, ହଁ ଖାଇବୁ ନାହିଁ କାହିଁକି ? ଯାହା ତୋତେ ଭଲ ଲାଗୁଛି ଖାଆ ନା !

କଥାଟା ମୋର ଦରଟେ ଗଲା ନାହିଁ । ଟାଲି ଖାଲି ଗିଳି ପକାଇବାକୁ ଲାଗିଲି । ଶେଷରେ ମୋ ପେଟ ଫୁଲିଗଲା । ତଥାପି ଟେବୁଲ ଛାଡିଲି ନାହିଁ । ଏହା ଦେଖି ପାରି ମାଆ କହିଲେ—ଯାଆ, ଏବେ ଉଠିଯାଆ ।

ରାତରେ ଭୋଜନ ପରେ ଦେଖିଲି, ଟେବୁଲ ଗୁଡାଏ ବିସ୍କୁଟ ଗଦାହୋଇଛି ତେଣେ ଷ୍ଟୋରେଇ ଘରେ ଢେର ମଇଦା ରହିଛି । ଅଥଚ ମୋର ଆଶଙ୍କା ହେଲା, ହୁଏତ କାଲି ସକାଳେ ଖିଆ ସହିତ ଆଉ କିଛି ମିଳିବ ନାହିଁ । ତେଣୁ ପେଣ୍ଟ ପକେଟରେ କିଛି ବିସ୍କୁଟ ଲୁଚାଇଦେଲି । ମାଆ ଜାମାପଟା କାଚିଲା ବେଳେ ସେହି ଓଦାଳିଆ ବିସ୍କୁଟ ଗୁଡାକ ଦେଖି ବହେ ବକିଲେ—ଏପରି ବଦଅଭ୍ୟାସ ଛାଡ଼ିବାକୁ ହେବ । ତା ପରେ ମୁଁ ଆଉ କିଛି ଚୋରି କଲି ନାହିଁ ।

ନିତି ସନ୍ଧ୍ୟାବେଳେ ହସ୍‌କନ୍ସ ମଉସା ନଜର ମଦ ଦୋକାନକୁ ଚାଲି ଯାଆନ୍ତି, ରାତିରେ ଆଉ ଫେରନ୍ତି ନାହିଁ । ଭୋର ସକାଳେ ଘରକୁ ଫେରନ୍ତି । ବାବାଙ୍କ ପରି ସେ ଦିନ ବେଳେ ଶୁଅନ୍ତି । ଢୋଲ ପିଟିଲେ ପୁଣି ସେ ଟିକେ ହଲଚଲ ହୁଅନ୍ତି ନାହିଁ ।

ଦିନେ ପାଦ ଚପି ଚପି ମଉସାଙ୍କ ଶୋଇବା ଘରେ ପଶି ଦେଖିଲି, ତାହାଙ୍କ ତକିଆ ତଳରେ ଗୋଟିଏ ବଡ ଚକଚକିଆ ରିଭଲଭର ଥୁଆ ହୋଇଛି । ମାଗ୍ରୀ ମାଉସୀଙ୍କୁ ଏହାର କାରଣ ପଚାରିଲି । ସେ ଜବାବ ଦେଲେ—ଗୋରା ଲୋକେ କୁଆଡେ ମଉସାଙ୍କୁ ଖୁନ କରିବାକୁ ଧମକାଉଛନ୍ତି ।

ଦିନେ ସକାଳେ ଉଠି ଦେଖିଲି, ମଉସା କୁଆଡେ କାଲି ରାତିରେ ଘରକୁ ଫେରି ନାହାଁନ୍ତି । ମାଉସୀ ଅତ୍ୟନ୍ତ ବିଚଳିତ ଓ କୋପିତ ହୋଇଗଲେ । ଦିପହରେ ଭୋଜନ ବେଳ ଗଡ଼ିଗଲା । ତାଙ୍କର ଦେଖା ନାହିଁ । ଖାଇବା ଦରବସବୁ ସେମିତ ଚୁଲୀ କଡରେ ଥୁଆ ହୋଇ ରହିଲା ।

ସଞ୍ଜ ହେଲା । ମାଉସୀ ଦୋକାନକୁ ଯାଇ ଘଟଣାଟା ଦେଖି ଆସିବାକୁ ବ୍ୟସ୍ତ ହେଲେ । ମାଆ ତାହାଙ୍କୁ ସବୁ କଥା ବୁଝାଇଦେଲେ ।

ଅନ୍ଧାର ମାଡ଼ି ଆସିଲା । ରାତି ହେଲା । ତଥାପି ମଉସା ଫେରିଲେ ନାହିଁ । ମାଗ୍ରୀ ମାଉସୀ ଭୀଷଣ ଅଧୀର ହେଲେ । ତାହାଙ୍କ ପାଟି ଝାଳ ମାରି ଗଲା । ସେ ଏକ ସମୟରେ ବଡର୍ ବଡର୍ କରି ଭଗବାନଙ୍କୁ

ଡାକଲେ—ଧଳା ଲୋକେ ତାଙ୍କର କିଛି ଖରାପ ନକରନ୍ତୁ ! ଶୋଇବା କୋଠରିକୁ ପଶିଯାଇ ସେ ଚମକି ପଡ଼ିଲେ, କାନ୍ଦି କାନ୍ଦି ହୋଇ କହି ପକାଇଲେ ସେ ଯେ ବନ୍ଧୁକଟା ନେଇ ନାହାଁନ୍ତି ! ହାୟ ଭଗବାନ ତାଙ୍କ କପାଳରେ ଆଜି କଅଣ ଲେଖିଛୁ !

ଆମେ ସଭିଏଁ ନୀରବରେ ବିରସ ବଦନରେ ଖାଇ ବସିଲୁ ।

ଘଣ୍ଟାକ ପରେ ବାରଣ୍ଡାରେ ଭାରି ବୁଟ୍ ଜୋତାର ଆବାଜ ଶୁଭିଲା । କିଏ ଦରଜା ବାଡେଇଲା । ମାଉସୀ ତୁରନ୍ତେ ଧାଇଁଯାଇ କବାଟ ଫିଟାଇ-ଦେଲେ । ଜଣେ ଡେଙ୍ଗା ନିଗ୍ରୋ ଟୋକା ଝାଳ ନାଳ ହୋଇ ଠିଆ ଠିଆ ଧକାଇଲା । ଟୋପି ଖୋଲି ନମସ୍କାର କରି ସେ ଥର ଥର ଗଳାରେ ଜଣାଇଲା ମିଷ୍ଟର ହସ୍‌କିନ୍‌ସ ଖୁନ ହୋଇଛନ୍ତି । ଜଣେ ଗୋରା ଲୋକ ତାହାଙ୍କୁ ଗୁଳି କରିଛି । ସେ ଆଉ ଜୀବନରେ ନାହାନ୍ତି ।

ମାଉସୀ କରୁଣ ବିଳାପ କରିବାରେ ଲାଗିଲେ । ତା ପରେ ସେ ଗାଢ଼ ଅନ୍ଧାରରେ ଧୂଳିଆ ପଥରେ ଧାଇଁଲେ । ମାଆଙ୍କ କଥା ସେ ଆଦୌ କାନକୁ ନେଲେ ନାହିଁ । ମାଆ ବି ତାହାଙ୍କ ପଛେ ପଛେ ଛୁଟିଲେ ।

ଟୋକାଟି ରଡ଼ି ଛାଡ଼ିଲା—ସାବଧାନ ! ଆପଣମାନେ କେହି ସେଠାକୁ ଯାଆନ୍ତୁ ନାହିଁ । ଗୋରାଲୋକେ ଆହୁରି ଧମକାଇଛନ୍ତି, ପରିବାରର ସଭିଙ୍କୁ ମାରି ପକାଇବେ ।

ମାଉସୀଙ୍କୁ ଟାଣି ଟାଣି ମାଆ ଘରକୁ ନେଇ ଆସିଲେ । ଭୟରେ ଶୋକରେ ନୋହି କିଅଁତେ ଜିଭେଇ ଗଲା ।

ସେହି ରାତିରେ ଆମେ ବାସନକୁସନ ଜାମାପଟା ସବୁ ଗୋଟା ଗୋଟି କରି ଗାଁର ଜଣେ ଚାଷୀର ମାଲବୁହା ଗାଡ଼ିରେ ଲାଦି ମାଛି ଅନ୍ଧାରରେ ଜୀବନ ନେଇ ସେଠାରୁ ପଳାଇଲୁ ।

ପରେ ଆମେ ଜାଣି ପାରିଲୁ, ମଉସାଙ୍କ ଲାଭଜନକ ମଦ ଦୋକାନ ଉପରେ କେତେକ ଗୋରା ଲୋକଙ୍କର ବହୁଦିନରୁ ବଦ୍ ନଜର ପଡ଼ିଥିଲା । ସେମାନେ ଦୋକାନଟା ହାତେଇ ନେବାକୁ ଏଭଳି ହୀନ କାଣ୍ଡଟାଏ ଘଟାଇଲେ ।

—*—

# ॥ ସାତ ॥

ଆମେ ପଶ୍ଚିମରେ ଏଲେନାରେ ଭଡ଼ା ଘରଟିଏ ପାଇଲୁ ।

ମାଗ୍ରୀ ମାଉସୀ ଦିନ ସାରା ଘରେ ଗୋଟିଏ କୋଣରେ ଚୁପ୍‌ଚାପ ବସି ଥାଆନ୍ତି । ସତ୍ରଙ୍କୁ ବାହାରିବାକୁ ତାଙ୍କର ସାହସ କୁଳାଏ ନାହିଁ । ଧୀରେ ଧୀରେ ମାଉସୀଙ୍କ ଭୟ କଟିଯିବାକୁ ଲଗିଲା । ପ୍ରାୟ ସାତାସ୍ବତ କଲେ, କିନ୍ତୁ ସାଧରେ ଗୋପନରେ । ସେ ମାଆଙ୍କ ଛଡ଼ା ଆଉ କାହାକୁ ଏସବୁ କଥା ଜଣାଇଲେ ନାହିଁ ।

ଆମ ପରିବାରର ହାଲତ ଖୁବ୍ ଖରାପ ହେଲା । ଆମେ କେତେକ ଆସବାବପତ୍ର ବିକି ଦେଲୁ, କେତେକ ବିତରଣ ମଧ୍ୟ କଲୁ । ବାକି ଯାହା କିଛି ରହିଲା, ସେସବୁ ଛାଡ଼ି ଦେଇ ଦିନେ ପୁଣି ରେଲଗାଡ଼ିରେ ଚଢ଼ିଲୁ ।

ସହରର ଶେଷ ସୀମାରେ ଗୋଟିଏ କୋଠା ଘରର ଅଧେ ଆମେ ଭଡ଼ା ନେଲୁ । ଘର ସାମ୍‌ନାରେ ଗୋଟିଏ ଟୁବ ଥିଲା । ନାଳର ମଇଳା ପାଣି ସେଥିରେ ଆସି ଜମା ହେଉଥିଲା । ଆମ ଘରର ପାଖଆଖରେ ନାନା ରକମର ଜୀବଜନ୍ତୁ ଓ ଲୋକବାକ ଠୁଳ ହେଉଥିଲେ । ସାମନାରେ ପାଚେଶ୍ଚ ସେସ୍ତ ଗୋଟାଏ ବିରାଟ ଘର ଥିଲା । ସେଠାରେ ରେଳ ଇଞ୍ଜିନ ଓ ଡବା-ଗୁଡ଼ିକ ଧୁଆଧୋଇ, ସଫାସଫି ଓ ମରାମତି ହେଉଥିଲା । ହରଦମ ଇଞ୍ଜିନର ସିଟି ଓ ଘଣ୍ଟିର ଆବାଜରେ ଆମ କାନ ଅତଡ଼ା ପଡ଼ି ଯାଉଥିଲା । ଧୂଆଁରେ ଚଉଦିଗ ଅନ୍ଧାର ହେଉଥିଲା । ଆଲକାତରାର ଦୁର୍ଗନ୍ଧ ଆସି ନାକରେ ବାଜୁଥିଲା । ସେଠାରେ କେହି ନ ଥିଲେ ଆମେ ନିଗ୍ରୋ ପିଲାଏ ଇଞ୍ଜିନ ଭିତରେ ପଶିଯାଇ ରେଲ ଚଳାଚଳର ଖେଳ ଖେଳୁଥିଲୁ ।

ତେବେ ନାଳ ଭିତରେ ଖାଲି ପାଦରେ ପଶି ବୁଲିବାଟା ଆମର ସବୁଠୁଁ ବେଶୀ ମଜାଦାର ଖେଳ ଥିଲା । ସେଥିରୁ ଭଙ୍ଗା ଶିଶି-ବୋତଲ, ଟିଣ, ଗ୍ରମଟ, ଲୁହାଖଣ୍ଡ, ମଲା କୁକୁର ବିଲେଇ, ବେଳେ ବେଳେ କିଛି ପଇସା ମଧ୍ୟ ଆମେ ଗୋଟାଉଥିଲୁ । ସିଗାରେଟର ବାକ୍‌ସରେ କାଡ଼କା

ଢ଼ଆର କର ଆମେ ସେହି ପାଣିରେ ଭସାଇ ଦେଉଥିଲୁ ।

ମାଆ ଓ ମାଉସୀ ଗୋରା ଲୋକଙ୍କ ଘରେ ରୋଷେଇ କାମ କରୁଥିଲେ । ସେତେ ବେଳେ ମୁଁ ଓ ସାନ ଭାଇଟି ମନ ଇଚ୍ଛା ଘୂରି ବୁଲୁଥିଲୁ । ସେମାନେ ଆମକୁ କିଛି ପଇସା ଦେଇ ଯାଉଥିଲେ । ସେଥିରେ ଆମେ ଦଶଟା ବେଳେ ମୋଡର ଇହୁଦୀ ଦୋକାନରୁ ବନ୍ କୁଟ ଓ କୋକାକୋଲା କିଣି ଖାଉଥିଲୁ । ଦିପହରେ ଏହା ହିଁ ଆମର ପ୍ରଧାନ ଖାନା ଥିଲା ।

ଆଗରୁ ମୁଁ କୌଣସି ଇହୁଦୀଙ୍କୁ କେବେ ଦେଖି ନ ଥିଲି । ସେମାନଙ୍କର ଅଜବ କଥାଭାଷା ଶୁଣିବା ଲାଗି ମୁଁ ଦୋକାନ କଡରେ ଠିଆ ହେଉଥିଲି । ପାଖ-ଆଖର କଳା ନିଗ୍ରୋ ଲୋକେ ଇହୁଦୀମାନଙ୍କୁ ଘୃଣା କରୁଥିଲେ । ସେମାନେ ଆମକୁ ଶୋଷଣ କରୁଥିଲେ ବୋଲି ନୁହେଁ, ଯୀଶୁ ଖ୍ରୀଷ୍ଟଙ୍କର ହତ୍ୟାକାରୀ ବୋଲି । ଏପରି ଘୃଣା କରିବାକୁ ଆମେ ଘରେ ଓ ରବିବାର ଦିନ ଗୀର୍ଜାରେ ଶିଖିଥିଲୁ । ଆମେ ସାତ ଆଠ ଜଣ ସାନ ସାନ ନିଗ୍ରୋ ପୁଅଝିଅ ଇହୁଦୀ-ମାନଙ୍କ ଦୋକାନକୁ ଯାଇ ବଡ ପାଟିରେ କେତେ ରକମ ପରିହାସଜନକ ଗୀତ ବୋଲୁଥିଲୁ ।

ଆମ ଘରେ ଗୋପନରେ କିଛି ଗୋଟାଏ କାଣ୍ଡ ଘଟୁଥିଲା । ମୁଁ ସେଟା ଜାଣି ପାରିଲି ବେଳକୁ, ପାଣି ଢେର ଦୂର ଗଡ଼ି ଯାଇଥିଲା । ପ୍ରାୟ ନିତି ରାତିରେ ଆଖିକୁ ନିଦ ଆସିବା ଆଗରୁ ଶୁଣି ପାରୁଥିଲି, ମାଉସୀଙ୍କ କୋଠରିର ଝରକାରେ କିଏ ଧୀରେ ଧୀରେ ଦସ୍ତକ ଦେଉଛି । ତା ପରେ ଦରଜାଟା ଖୋଲିଯାଏ । କିଛି ସମୟ ଫୁସୁର ଫାସୁର କଥା ଶୁଭେ । ଦିନେ ବିଛଣାରୁ ତଳକୁ ଖସି ଆସି ହାମୁଡେଇ ହାମୁଡେଇ ଦରଜା କଡକୁ ଯାଇ ଲୁଚି କରି ଦେଖିଲି । ଜଣେ ଦାମୀ ପୋଷାକ ପରିହିତ କଳା ଭଦ୍ରଲୋକ ସୋଫାରେ ବସି ମାଉସୀଙ୍କ ସହିତ ଚୁପ ଚାପରେ କଥା ହେଉଛି । ମୁଁ ତାହାକୁ ଆଗେ କେବେ ଦେଖି ନ ଥିଲି । ମୁଁ ବିଛଣାକୁ ଫେରି ଆସିଲି, କିନ୍ତୁ ନିଦ ହେଲା ନାହିଁ । ସକାଳେ ମାଆଙ୍କୁ ପଚାରିଲି—କାଲି ରାତିରେ ଆମ ଘରକୁ କିଏ ଆସିଥିଲା କି ?

ମାଆ ଜବାବ ଦେଲେ—କେହି ନୁହେଁ, ତୁ ଗୋଟାଏ ସପନ ଦେଖିଛୁ ।

ତାହାଙ୍କ କଥା ମୋ ମନକୁ ପାଇଲା ନାହିଁ ।

ରବିବାର ଦିନ ସକାଳେ ସେଥିର ଆଭାସ ପାଇଲି । ମାଉସୀ ମୋତେ ଓ ମୋ ଭାଇକୁ ଡାକି କରି ସେହି ଭଦ୍ର ଲୋକଙ୍କ ସହିତ ଆଳାପ କରାଇଦେଲେ । ମାଉସୀ ଆମକୁ ଜଣାଇଲେ—ସେ କିଛିଦିନ ଅଞ୍ଚଳରେ ଆମର ନୂଆ ମଉସା ହେବେ । ତାହାଙ୍କ ନାମ ଅଧ୍ୟାପକ ମାଥୁସ୍ । ସେ ଆମ ହାତରେ କିଛି ପଇସା ଗୁଞ୍ଜିଦେଲେ । ତା ପରେ ସେ ଆମ ଅବାଗା ଦୁଇଜଣଙ୍କ ସକାଶେ ଆଣ୍ଠୁମାଡ଼ି ବସି ଭଗବାନଙ୍କୁ ନିବେଦନ କଲେ । ମାଉସୀ ଅଧ୍ୟାପକଙ୍କ ସହିତ ଅଞ୍ଚଳରେ ଉତ୍ତର ମୁଲକକୁ ଚାଲିଯିବାର ଶୁଣି ମୁଁ ବିଶେଷ ଦୁଃଖିତ ହେଲି । କାରଣ ମାଉସୀ ଆମ ପକ୍ଷରେ ଅବିକଳ ମାଆ ଭଳି ଥିଲେ ।

ତା ପରେ ମାଆ ଆମକୁ ହୁସିଆର କରିଦେଲେ—ନୂଆ ମଉସା ଯେ ଏଠାକୁ ଆସନ୍ତି, ସେ କଥା କେବେ ବାହାରେ କାହାକୁ ଜଣାଇବ ନାହିଁ । କାରଣ ଲୋକେ ତାହାଙ୍କୁ ଖୋଜି ବୁଲୁଛନ୍ତି ।

ମୁଁ ପଚାରିଲି—କେଉଁ ଲୋକମାନେ, ମାଆ ?

ମାଆ ଜବାବ ଦେଲେ—ଗୋରା ଲୋକ ମାନେ ।

ଏଇନେ ତୁ ସେ କଥା ବୁଝି ପାରିବୁ ନାହିଁ । ଶୁଣି ହୁଅ, ନୋହିଲେ ବାହାରେ ପିଲାଙ୍କ ସଙ୍ଗରେ ଖେଳିବୁ ଯାଅ ।

ଦିନେ ରାତି ଅଧରେ ଚାପା କାନ୍ଦଣାରେ ମୋ ନିଦ ଭାଙ୍ଗିଗଲା । ମୁଁ ଚୁପି ଚୁପି ବିଛଣାରୁ ଉଠି ବାହାର କୋଠରୀକୁ ଆଗେଇ ଚଲି । ଦରଜାର ଫାଙ୍କରେ ଉଙ୍କି ମାରି ଦେଖିଲି, ନୂଆ ମଉସା ଘରେ ବସି ଝରକା ବାଟେ ବାହାରର ଗାଢ଼ ଅନ୍ଧାରକୁ ଅନାଇ ରହିଛନ୍ତି । ମାଆ ତରବରରେ ଜିନିଷ-ପତ୍ର ସବୁ ସଜଡ଼ା ସଜଡ଼ି କରୁଛନ୍ତି । ଭୟ ଓ ଆଶଙ୍କାରେ ମୋ ଛାତି ଧଡ଼ପଡ଼ ହେଲା । ତେବେ ମାଆ କଅଣ ଚାଲିଯାଉଛନ୍ତି ? ମାଉସୀ କାହିଁକି ବା କାନ୍ଦୁଛନ୍ତି ? ଗୋରା ଲୋକମାନେ କଅଣ ସତରେ ଖେଦି ଆସୁଛନ୍ତି ?

ମଉସା ସହସା କହି ପକାଇଲେ—ଆମକୁ ଏଖଣି ଏଠାରୁ ଚାଲିଯିବାକୁ ହେବ । ସବୁ କାମ ବେଗି ବେଗି ସାରିନିଅ ।

ମାଆ ମାଉସୀଙ୍କୁ ପଚାରିଲେ—ମାଗୀ, ତୋର ଆଜ୍ଞା ନ ଗଲେ ଚଳିବ ନାହିଁ ?

ଏବେ ଆଉ ବାଧା ଦିଅନ୍ତୁ ନାହିଁ—ମଉସା ଅନୁରୋଧ କଲେ । ସତକର କଳା କଳା କଟି କଟି ଅନ୍ଧାରକୁ ସେ ଅପଲକ ନୟନରେ ଅନାଇ ରହିଲେ ।

ମାଉସୀ ପଚାରିଲେ—କି କାଣ୍ଡଟା ଘଟାଇ ଆସିଛ, ଟିକିଏ ଶୁଣେ ?

ମଉସା ତକ୍ଷଣେ ଜବାବ ଦେଲେ—ସେ କଥା ପରେ ଶୁଣିବ । ଏକ୍ଷଣି ସେମାନେ ଏଠି ଆସି ହାଜର ହେବା ଆଗରୁ ଆମକୁ ବାହାରି ଯିବାକୁ ହେବ ।

ମାଉସୀ ପୁଣି କହି ପକାଇଲେ—ତୁମେ ନିଶ୍ଚୟ କିଛି ସାଙ୍ଘାତିକ କାମ କରି ଆସିଛ । ନୋହିଲେ ଏଠୁ ପଳାଇ ଯିବାକୁ ଏତେ ଉଚ୍ଛନ୍ନ ହୁଅନ୍ତ ନାହିଁ ।

ମଉସା ଆଶ୍ୱାସ ଦେଲେ—ଏଇନେ ଘରଟା ଜଳୁଛି । ନିଆଁ ଦେଖିଲେହିଁ ସେମାନେ ନିଶ୍ଚୟ ଠଉରାଇ ନେବେ, ଏ କାଣ୍ଡଟା କିଏ କରିଆଇଛି ।

ଏଁ ଘରେ ନିଆଁ ଲଗାଇ ଦେଇ ଆସିଛନ୍ତି ?—ମାଆ ଅବାକ ହୋଇ ପଚାରିଲେ ।

ମଉସା ଶୁଖିଲା ଗଳାରେ ଜବାବ ଦେଲେ—ତାହା ଛଡ଼ା ଯେ ଆଉ କିଛି ଉପାୟ ନଥିଲା ।

—*—

॥ ଆଠ ॥

ମାଗୀ ମାଉସୀ ଗୃହ ଗଲା ପରେ ମାଆ ଆମର ଖିଆପିଆ, ଜାମାପଟା ଲେଖାପଢା ଇତ୍ୟାଦି ସବୁ କିଛି ଏକା ଯୋଗାଡ କରି ପାରିଲେ ନାହିଁ । ଫଳରେ ଅଧିକାଂଶ ଦିନ ଆମକୁ ଉପାସ ରହିବାକୁ ପଡୁଥିଲା । ପ୍ରାୟ ଦିନ ସାରା ମୋ ମଥା ବୁଲାଉଥିଲା । ମୁଁ ଭୋକର ଦାଉ ସମ୍ଭାଳି ନ ପାରି ଦିନେ ବିକାଳରେ ଠିକ କଲି କୁକୁରଟାକୁ ବିକିଦେଇ ବଜାରରୁ କିଛି ଖାଦ୍ୟ ଦ୍ରବ୍ୟ କିଣି ଆଣିବି ।

କୁକୁରଟାକୁ କାଖେଇ ଏକା ପହିଲେ ଗୋରା ଭଦ୍ର ଲୋକଙ୍କ ପଡାକୁ ଗଲି ସେମାନଙ୍କର କୋଠା ଗୁଡାକ ବିରାଟ, ଦେଡଜ ସବୁ ଓସାରିଆ, ସଫାସୁତରା, ଓ ଚକଚକିଆ । ସେମାନଙ୍କ ଘରକୁ ଘର ବୁଲିବାକୁ ଲାଗିଲି । ବାହାରେ ଘଣ୍ଟି ଟିପିଦେଲେ, କେହି ଗୋରା ଲୋକ ବାହାରି ଆସେ ଏବଂ ମୋତେ ଦେଖି ଦରଜା କିଳିଦିଏ । କିଏ ବା କହେ, ପଛପଟକୁ ଯାଅ । ମୋ ମନରେ ଖଟକା ଲାଗେ ।

ଅବଶେଷରେ ଜଣେ ଗୋରା ଲୋକର ଝିଅ କବାଟ ଖୋଲିଦେଇ ପଚାରିଲା—କଅଣ ଲୋଡା ?

ମୁଁ ତାହାକୁ ଓଲଟି ପଚାରିଲି—କୁକୁର ନେବ ? ଭାରି ସୁନ୍ଦର କୁକୁର ?

କାହିଁ ? ଦେଖେଁ ! ଝିଅଟି ପଚାରିଲା ।

କୁକୁରଟିକୁ ଝିଅର ହାତକୁ ବଢାଇ ଦେଲି । ସେ ତାହାକୁ କୋଳ କଲା, ଆଦରରେ ଚୁମା ଦେଲା ।

ସେ ମୋତେ ତା ନାମ ପଚାରିବାରୁ, ମୁଁ କହିଲି ବେଟ୍‌ସୀ ।

ଖାସା ନାମ ତ, ଦାମ କେତେ ?

ଏକ ଡଲାର !

ଝିଅଟି ଜବାବ ଦେଲା—ହେଉ ଟିକଏ ବଢ଼ୁ, ଦେଖେଁ ଏତେ ପଇସା ହେବ କି ନା । କୁକୁରଟିକୁ କାଖେଇ ଝିଅଟି ଭିତରକୁ ଚାଲିଗଲା । ମୁଁ ବାହାରେ ବସି ରହିଲି । କିଛି ସମୟ ପରେ ଦରଜାଟା ପୁଣି ଖୋଲି ଗଲା । ଝିଅଟି ବ ହାତରେ କୁକୁରକୁ ଛାତିରେ ଜାବୁଡ଼ି ଧରି ବାହାରି ଆସିଲା, ଆଉ କହିଲା—ଭାରି ଭଲ କୁକୁର, ମୋ ମନକୁ ପାଇଲା । ଏଟା ମୁଁ ରଖିଲି । ତେବେ ପୂରା ପୂରା ଡଲାରଟିଏ ହେଲା ନାହିଁ । ନିଅ ପଚାନବେ ସେଣ୍ଟ ।

ଗୋରା ଲୋକକୁ କୁକୁରଟି ବିକିବାକୁ ମୋର ଆଦୌ ମନ ନଥିଲା । ତେଣୁ ଥଙ୍ଗେଇ ଥଙ୍ଗେଇ କହିଲି ନା, ପୂରା ଡଲାରଟିଏ ଦିଅନ୍ତୁ ।

କିନ୍ତୁ ଏକ୍ଷଣି ତ ପୂରାପୂରା ଡଲାରଟାଏ ମୋ ପାଖରେ ନାହିଁ ।

ତାହାହେଲେ ମୁଁ କୁକୁରଟା ବିକିବି ନାହିଁ । ମୁଁ ଜିଦ ଧରିଲି ।

ଶୁଣ, ରାତିରେ ମୋ ମାଆ ଘରକୁ ଫେରି ଆସିଲେ, ବାକି ପାଞ୍ଚ ସେଣ୍ଟ ଦେଇଦେବି । ଝିଅଟି କୁକୁରକୁ ଛାତି ଉପରେ ଭିଡ଼ିଧରି ମୋତେ ମୁଠାଏ ଖୁଚୁରା ବଢ଼ାଇ ଦେଲା ।

ମଥା ହଲାଇ ମୁଁ ଜୋରରେ କହିଲି—ନା, ଗୋଟାଏ ଡଲାର ନହେଲେ ମୁଁ କୁକୁରଟି ବିକିବି ନାହିଁ ।

କହିଲି ପରା, ବାକି ପାଞ୍ଚ ସେଣ୍ଟ ପରେ ଦେବି ।

କିନ୍ତୁ ଗୋଟାଏ ଡଲାରରୁ କମ୍ ଦାମରେ କୁକୁର ବିକିବାକୁ ମାଆ ମୋତେ ମନା କରିଛନ୍ତି ।

ଦୋଷଟା ମାଆଙ୍କ ଉପରେ ଲଦି ଦେଲି ।

ରାତିରେ ଆଉ ପାଞ୍ଚ ସେଣ୍ଟ ଦେଇଦେବି, ଏଥିରେ ତୁମର ଅସୁବିଧା କଅଣ ?

ନା, ସେ କଥା ହେବନାହିଁ । ମାଆ ମୋତେ ଗାଳି କରିବେ ।

ତାହାହେଲେ କୁକୁରଟା ମୋ ପାଖରେ ଥାଉ, ରାତିରେ ଆସି ବାକି ପଇସାତକ ନେଇଯିବ ।

ନା, ପୂରା ଏକ ଡଲାର ନ ଦେଲେ, ମୁଁ କୁକୁର ବିକିବି ନାହିଁ ।

ଏକ ଡଲାର ନେଇ ତୁମେ କଅଣ କରିବ ?

ଖାଇବାର ଦରବ ସବୁ କିଣିବି ।

ହେଉ, ପଞ୍ଚାନବେ ସେଣ୍ଟ୍‌ରେ ତ ତୁମେ ଗଦାଏ ଦରବ କିଣି ପାରିବ ।

ନା, କୁକୁରଟା ମୋତେ ଦେଇ ଦଅନ୍ତୁ ।

ଟିଅଟି କିଛି ସମୟ ମୋ ମୁହଁକୁ ବଲ ବଲ କରି ଅନାଇଲା । ତା ମୁହଁ ନାଲି ପଡ଼ି ଗଲା । ମୁହଁ ଫଣ ଫଣ କରି ସେ କହିଲା—ନେ ତୋ କୁକୁର, ଏଠୁ ଦୂର ହୋଇଯା ।

ଟିଅଟି କୁକୁରକୁ ମୋ ଉପରେ ଫୋପାଡ଼ି ଦେଲା । ତା ପରେ କୁକୁରକୁ ନେଇ ମୁଁ ଘରକୁ ପଳାଇ ଆସିଲି । କୁକୁର ବିକା ନହେବାରୁ ମୋତେ ଖୁବ ଖୁସି ଲାଗିଲା । ଏଣେ ଭୋକରେ ପେଟ କୁଁ କୁଁ ହେଉଥିଲା । ରାତିରେ ମାଆ ଘରକୁ ଫେରିଲେ । ତାଙ୍କୁ ଏ କଥା ଜଣାଇଲି । ମାଆ ଅବାକ ହୋଇ ପଚାରିଲେ—ପଇସା ନେଲୁନି ?

ନା, ମାଆ—ଜବାବ ଦେଲି ।

ମାଆ ଚଟି ଯାଇ କହିଲେ—କାହିଁକି ରେ ? ପଞ୍ଚାନବେ ସେଣ୍ଟ୍ ତ ଗୋଟାଏ ଡଲାର ସହ ପ୍ରାୟ ସମାନ । ଏତିକା ଜାଣୁନା ? ମୋଟେ ପାଞ୍ଚ ସେଣ୍ଟ କମ୍ ।

ହେଲା ଯେ, ତେବେ ସେହି ଗୋରା ଲୋକକୁ କୁକୁର ବିକିବାକୁ ମୋର ମୋଟେ ଇଚ୍ଛା ହେଲା ନାହିଁ ।

ପ୍ରାୟ ସପ୍ତାହକ ପରେ ଗୋଟାଏ କୋଇଲା ବୋଝେଇ ଗାଡ଼ିତଳେ ଚପା ପଡ଼ି କୁକୁରଟି ମରିଗଲା । ମୁଁ ଭେଁ ଭେଁ ହୋଇ କାନ୍ଦିଲି ଏବଂ ଘରର ପଛପଟେ ସେଟାକୁ କବର ଦେଲି । ତା କଡ଼ରେ ଗ୍ରେଟ ଗଛଟିଏ ପୋତିଲି । ତାହା ଦେଖି ମାଆ ଥଟ୍ଟା କଲେ—ଡଲାରଟା ଜାଣି ଜାଣି ଗୋଡ଼ରେ ଠେଲି-ଦେଲୁ । ଏବେ ବସି ବସି କୁକୁରର ଲାସଟା ଖାଇବୁ ଯେ !

ତା ପରେ ପଞ୍ଚମି ହେଲେନାରେ ଆମର ଅନେକ ଦିନ କଟିଗଲା । ଦୈବ ଯୋଗକୁ ମାଆ ସେଠାରେ ଟଣ୍ଟିଏ ଚାକିରି ପାଇ ଗଲେ । ଜଣେ

ଗୋଷ୍ଠ ଲେକର ଡାକ୍ତରଖାନାରେ, ସପ୍ତାହକୁ ପାଞ୍ଚ ଡଲାର ଦରମା । ମାଆ କହି ପକାଇଲେ—ଯାହା ହେଉ, ମୋ ପୁଅମାନେ ଏଣିକି ବିଦ୍ୟାଳୟକୁ ଯାଇପାରିବେ ।

ମୁଁ ତ ଖୁସିରେ ନାଚିଲି । ମୁଁ ଭାରି ଲାଜକୁଳା ଥିଲି । ବିଦ୍ୟାଳୟରେ ମୋ ନାମ ଲେଖାଗଲା । ପ୍ରଥମ ଦିନ ଶିକ୍ଷୟିତ୍ରୀ ମୋତେ ଡାକି ବିସ୍ମାଦ କଲେ—ତୁମ ନାମଟା କଳାପଟାରେ ଲେଖ ତ ଦେଖି ! ମୋ ନାମ ଧାମ ସବୁ ମୋତେ ଠିକ୍ ଜଣାଥିଲା । କିନ୍ତୁ ଶ୍ରେଣୀରେ ଗୋଠେ ପିଲାଙ୍କ ଆକୁଳ ନଜରରେ ମୋ ଭିତରେ ସବୁ କିଛି ଗୋଲମାଲ ହୋଇଗଲା । ପଟାରେ ଗୋଟିଏ ହେଲେ ଅକ୍ଷର ଲେଖିବାକୁ ହାତ ଚଳିଲା ନାହିଁ । କାଠ ପାଲଟି ଗଲି । ହସର ରୋଳ ଛୁଟିଲା । ମୋ ମୁହଁ ନାଲି ପଡ଼ିଗଲା । ନିଜ ନାମ ଜଣା ନାହିଁ ? ଶିକ୍ଷୟିତ୍ରୀ ପଚାରିଲେ । ମୁଁ ମୁହଁ ଟେକି ତାଙ୍କୁ ଅନାଇଲି । କିଛି ଜବାବ ଦେଇ ପାରିଲି ନାହିଁ । ସେ ଚଉକିରୁ ଉଠି-ପଡ଼ି ମୋ ଠାକୁ ଚାଲି ଆସିଲେ । ମୋତେ ଭରସା ଦେବାକୁ ସେ ଟିକିଏ ହସିଲେ । ହାତଟି ମୋ କାନ୍ଧ ଉପରେ ରଖିଲେ, ଆଉ ଆପ୍ୟାଇ ପଚାରିଲେ ତୁମ ନାମ କଣ ?

ରବର୍ଟ—ମୁଁ ଫୁସ୍ ଫୁସ୍ କରି କହିଲି ।

ହଁ, ରବର୍ଟ କଅଣ ?

ରବର୍ଟ ଗ୍ଲାଇଟ ! ବେଶ୍, ବନାନ କରି ଲେଖି ଦିଅ ତ !

ଲେଖିବା ଲାଗି ମୁଁ କଳାପଟା ଆଡ଼କୁ ହାତ ବଢ଼ାଇଲି, ମାତ୍ର ଲେଖି ପାରିଲି ନାହିଁ । ମୋ ମନ ଭିତରଟା ଫାଙ୍କା ହୋଇଗଲା । ମୋ ପଛରେ ପିଲାଙ୍କ ଖିଲି ଖିଲି ହସର ରବ ଶୁଣି ମୋ ମନ ଭିତରେ ସବୁ କିଛି ଗୋଲ-ମାଲ ହୋଇଗଲା । ମୋ ହାତ ଥରୁଥିବା ଭଳି ହେଲା ।

ହେଉ, ଏବେ ହେଲା, ଯାଅ, ତୁମ ଜାଗାରେ ବସ — ଶିକ୍ଷୟିତ୍ରୀ ଆଦେଶ ଦେଲେ । ଚିଭ ଦିନ ଆସିଲା । ମୋ କପାଳରେ ଖାଲି ଗୋଟାଏ କମଳା ଜୁଟିଲା ଉପହାର ଭାବରେ । ମୁହଁ ଫୁଲେଇ ବସି ରହିଲି । ପଡ଼ା ର ପିଲାଏ ଖୁସିରେ ନାଚୁଥିଲେ, କୁଦୁଥିଲେ । ସେମାନଙ୍କ ସହିତ ଖେଳିବା ଲାଗି ମୋ ମନ ଟେକିଲା ନାହିଁ । ଦିନ ସାରା ମୁଁ କମଳାଟା ହାତରେ ଧରି ବୁଲିଲି । ରାତିରେ ଶୋଇବା ଆଗରୁ ସେଟା ଖାଇ ପକାଇଲି ।

# ॥ ନଅ ॥

ବୟସରେ ବଡ ହୋଇଯିବାରୁ, ମୁଁ ଯାଇ ବଡ ପିଲାଙ୍କ ବିଦ୍ୟାଳୟରେ ନାମ ଲେଖାଇଲି । ଉପରଓଳି ବିଦ୍ୟାଳୟ ଛୁଟି ହେଲେ ସେମାନଙ୍କ ସହିତ ଏଣେ ତେଣେ ବୁଲି ବୁଲି ଘରକୁ ଫେରେଁ ।

ମାଆ ଖୁବ ବେମାର ପଡ଼ିଲେ । କାମଦାମ କରିବାକୁ ସେ ଆଉ କୁଆଡେ ଯାଇ ପାରିଲେ ନାହିଁ । ତେଣୁ ମୁଁ ବାଧ୍ୟ ହୋଇ ଗୋଟିଏ ଠିକା କାମ କଲି—କାରଖାନାର ଶ୍ରମିକମାନଙ୍କ ପାଇଁ ସେମାନଙ୍କ ଘରୁ ଖାଦ୍ୟ ଆଣିଦେବା । ଜଣକା ପଚିଶ ସେଣ୍ଟ ମୋତେ ଦିଅନ୍ତି । ସେମାନେ ଖାଇ ସାରିଲେ, ଯାହା କିଛି ଅଇଁଠା କଣ୍ଟା ପଡ଼ିଥାଏ ମୁଁ ସେତକ ଗୋଟାଇନିଏ । କେତେଦିନ ପରେ କର୍ଫି ଖାନାରେ ଆଉ ଗୋଟାଏ କାମ ପାଇଲି—ସେଠାରେ ଗୋଟାଏ ଖୁବ୍ ବଡ ଚୁଲି ପାଇଁ କାଠ ଯୋଗାଇବାକୁ ହୁଏ । ପାଖ ଷ୍ଟେସନରେ ରେଲଗାଡ଼ି ଆସି ପ୍ରାୟ ଅଧ ଘଣ୍ଟାଏ ରହେ । ସେତିକିବେଳେ ଯାତ୍ରୀମାନଙ୍କୁ ହୋଟେଲରୁ ନେରେ ଖାଦ୍ୟ ନେଇ ଯୋଗାଏ । ଏଥି ପାଇଁ ସପ୍ତାହକୁ ଏକ ଡଲାର୍ ଦରମା ପାଏଁ । ସେତେବେଳକୁ ମୋର ବୟସ ବେଶି ହୋଇ ନ ଥିଲା । ଦିନେ ସକାଳେ ଗାଡ଼ି ଉପରକୁ ଉଠିଲି ବେଳେ ଧାମୁଡ଼ି ପଡ଼ିଲି, ତେଣୁ ଖାଦ୍ୟସବୁ ତଳେ ପଡ଼ିଗଲା । ଫଳରେ ମୁଁ ସେହି ଚାକିରିଟା ହରାଇଲି ।

ଏଣେ ଘରଭଡ଼ା ଦେଇ ନ ପାରିବାରୁ, ସେଟା ଛାଡ଼ି ଦେଇ ଆମେ ସହରର ଖାଲି ଜାଗାରେ ଗୋଟିଏ କାଠ ଘରକୁ ଉଠି ଆସିଲୁ । ଯେଉଁଠି ଜୁଆର ବେଳେ ପାଣି ଜମି ରହୁଥାଏ, ଫଳରେ ବେଶି ଦିନ ସେଠାରେ ରହି ପାରିଲୁ ନାହିଁ ।

ସହରର ବାହାରେ ରେଳ ଲାଇନ୍ କଡ଼ରେ ଗୋଟିଏ ଖୋଲା ଘରକୁ ଘୁଞ୍ଚିଗଲୁ । ନିତି ସକାଳେ ଚୁଲ୍ଲୀରେ ଜାଳିବା ଲାଗି ବଡ଼ ବଡ଼ ଇଞ୍ଜିନରୁ କଳା କୋଇଲା ଖଣ୍ଡ ସବୁ ଗୋଟାଇ ଆଣୁଥିଲି । ତା ପରେ ବିଦ୍ୟାଳୟକୁ ଯାଉଥିଲି ।

ମାଆଙ୍କ ଦେହ ଦିନକୁ ଦିନ ଅଧିକ ଖରାପ ହେବାକୁ ଲାଗିଲା । ସେ ପ୍ରାୟ ବରାବର ଆଈ ମାଆଙ୍କ ଘର କଥା କହୁଥିଲେ । କେତେ ଦିନ ପରେ ସେ ଆଉ ଭଲକରି କଥା କହି ପାରିଲେ ନାହିଁ । ଖାଲି ଅଚେଇ ହେଲେ । ମୁଁ ତାଙ୍କୁ ଏକା ଛାଡ଼ି ଦେଇ କୁଆଡ଼େ ଆଉ ଗଲି ନାହିଁ । ସେ ମୋତେ ଟିକିଏ ଅନାଇଲେ ଖୁସି ହୁଏ ମୋତେ । ଆମେ ତ ଭିକ ଖୋଜି ଉପାସରେ କିଛି କିଛି ଦିନ କଟେଇବାକୁ ଲାଗିଲୁ ।

ଦିନେ ସକାଳେ ସହସା ଗୋଟାଏ ଚିତ୍କାର ଶୁଣି ମୋ ନିଦ ଭାଙ୍ଗିଗଲା ମୁଁ ବିଛଣାରୁ ଉଠି ପଡ଼ିଲି ।

ସାନ ଭାଇଟି ଏକ ନିଶ୍ୱାସରେ କହିଗଲା—ମାଆଙ୍କୁ ଦେଖିବ ଆସ, କାହିଁକି ସେ ଏମିତି ହେଉଛନ୍ତି ।

ମୁଁ ତୁରନ୍ତେ ଧାଇଁଯାଇ ଦେଖିଲି, ମାଆ ଆଁ କରି ଆଖି ମେଲି ଚୁପଚାପ ବିଛଣାରେ ପଡ଼ିଛନ୍ତି । ତାଙ୍କୁ ବାର ବାର ଡାକିଲି । ସେ କିଛି ଜବାବ ଦେଲେ ନାହିଁ, ଏପରିକି ଟିକିଏ ହଲଚଲ ପୁଞ୍ଚା ହେଲେ ନାହିଁ ।

ମୋତେ ଚଉଦିଗ ଅନ୍ଧାର ଦିଶିଲା । ମୁଁ ଘରୁ ଧାଇଁ ଯାଇ ଜଣେ ପଡ଼ିଶା ମହିଳାଙ୍କୁ ଡାକି ଆଣିଲି । ସେ ମାଆଙ୍କୁ କେତେ ଥର ଡାକିଲେ, ହଲେଇଲେ, ଶେଷରେ ତାଙ୍କ ନାଡ଼ି ଦେଖି କହିଲେ—ନା, ମରି ନାହିଁ, ତେବେ ଗୁରୁତର ଅବସ୍ଥା ।

ସେ ବଡ଼ ପାଟିରେ ଆଉ କେତେ ଜଣଙ୍କୁ ଡାକିଲେ । ସେମାନେ

ଭିତରେ ଆସି ହାଜର ହେଲେ । ଜଣେ କହି ପକାଇଲା—ପକ୍ଷାଘାତ ହୋଇ ମନେ ହେଉଛି ।

ଏହା ଶୁଣି ସମସ୍ତେ ବିଚଳିତ ହେଲେ । ମୁଁ ଭୟରେ ଥରିଲି—ଏସବୁ କଅଣ ହେଲା ? ମାଆ କଅଣ ସତରେ ମରିଯିବେ ? ସେହି ମହିଳାମାନେ ତେଣୁ ଖୋଜି ଖୋଜି କିଛି ପଇସା ମାଆର ପେଡ଼ିରୁ ବାହାର କଲେ । ଡାକ୍ତର ଆସିଲେ, ସେ ବି କହିଲେ—ପକ୍ଷାଘାତ, ଏପରି ଅବସ୍ଥା ବିଶେଷ ଭଲ ନୁହେଁ, ବାମ ଅଙ୍ଗଟା ପୂରାପୂରି ଅଚଳ, କଥା ତ ମୋଟେ କହି ପାରୁ ନାହିଁ । ଦେଖା ଶୁଣା କରିବା ଲାଗି ଜଣେ ଲୋକ ଦରକାର, ବରାବର ଔଷଧ ଖୁଆଇବାକୁ ହେବ ।

ପଡ଼ାର ମହିଳାମାନେ ଦିନ ରାତି ମାଆଙ୍କୁ ଦେଖାଶୁଣା କରିବାକୁ ଲାଗିଲେ । ଆମ ଦି ଭାଇଙ୍କୁ ସେମାନଙ୍କ ଘରକୁ ଡାକି ନେଇ ଖାଇବାକୁ ଦେଲେ । ସେମାନଙ୍କ ଘରେ ଦିନ ପରେ ଦିନ ଖାଇବାକୁ ଯିବାପାଇଁ ସତରେ ମୋତେ ଭାରି ଲାଜ ମାଡୁଥିଲା । ତଥାପି ଏହାଛଡ଼ା ଅନ୍ୟ କିଛି ଉପାୟ ନ ଥିଲା ।

ଯାହା ହେଉ, ଅଈମାଆଙ୍କୁ ଚିଠି ଦେବାରୁ ସେ ଆସିଗଲେ । ତାଙ୍କ ହାତରେ ସବୁ କିଛି ଛାଡ଼ି ଦେଇ ମୁଁ ନିଜର ଜୀବନ ଧରି ରହିଲି । ଅଈ-ମାଆଙ୍କ କଥା ମତେ ମୁଁ ତାଙ୍କର ଆଠ ଜଣ ପୁଅ ଝିଅଙ୍କୁ କିଛି ସାହାଯ୍ୟ ପାଇଁ ଚିଠି ଲେଖିଲି । ଟଙ୍କା ଆସିଗଲା ।

କେତେ ଦିନ ପରେ ଆମେ ମାଆଙ୍କୁ ନେଇ ଜାଜପୁର ଗଲୁ । ଅଈ-ମାଆଙ୍କର ବିରାଟ କୋଠାଟା ଏବେବି ନିରବ ଥିଲା । କେହି ବଡ ପାଟିରେ କଥା ହେଉ ନଥିଲେ । ନିତି ଡାକ୍ତର ଆସି ମାଆଙ୍କୁ ଦେଖୁଥିଲେ ।

ଔଷଧ ଗନ୍ଧ ବରବର ବାହାରୁଥିଲା । ବଡ଼ ଗୁଡ଼ ମାଆ ଗଁ ଗଁ ହେଉଥିଲେ ।

ଗୁଡ଼ ମାମୁଁ ଓ ବଡ଼ ମାଉସୀ ଆସିବାରୁ, ଘର ଗୋଟାକ ପାଟିଗୋଳରେ ଉଚ୍ଛୁଳିଲା । ବଡ଼େ ଜଣେ ମାମୁଁ ମୋତେ ଡାକିଲେ, ମୋ ହାଡ଼ୁଆ ଦେହ ସାରା ହାତ ବୁଲାଇଲେ । ସେ ଆପେ ଆପେ କହିଲେ—ଭଲଭାବରେ ଖିଆପିଆ କଲେ ତା ଦେହ ଫେରିଯିବ । ଆଉ ମାଆ ବି ସେଥିରେ ମତଦେଲେ । ତା ପରେ ସେ ମୋତେ ହ'ର୍ଲିକ ପେଟ ପୁରା ଖାଇବାକୁ ଦେଲେ । ଧୀରେ ଧୀରେ ମୋ ଦେହ ଲାଗି ଆସିଲା ।

ମାମୁ ଓ ମାଉସୀମାନେ ଆଲୋଚନା କଲେ, ଆଉ ତ ଏକା ଆମ ସଭିଙ୍କୁ ଏଠି ଚଳାଇ ପାରିବେ ନାହିଁ । ତେଣୁ ମାଗୀ ମାଉସୀ ସାନ ଭାଇକୁ ତା' ପାଖକୁ ନେଇଯିବ । ଆଉ ମୁଁ ୪୦ କୋଡି ମାଇଲ ଦୂର ଗୀ-ଉଡରେ ରହୁଥିବା କ୍ଲାର୍କ ମାମୁଁଙ୍କ ପାଖକୁ ଚାଲିଯିବ ।

ଏତିକରେ ଏକ ଜଟିଳ ସମସ୍ୟାର ସମାଧାନ ହେଲା । ସଭିଏଁ ନାନା ଚନ୍ତାର ଜାଲରୁ ମୁକୁଳିଲେ ।



## ॥ ଦଶ ॥

ପୁଣି ମୁଁ ରେଲଗାଡ଼ିରେ ଚଢ଼ିବାର ସୁଯୋଗ ପାଇଲି ।

ଗ୍ରୀନଉଡରେ ମାମୁଁଙ୍କ ଦୋକାନ ସଡ଼କ କଡ଼ରେ । ଗଛଲତାର ବନ ଭିତରେ ଗୋଟାଏ ଡାକବଙ୍ଗଳା ପରି ମାଲୁମ ହେଉଥିଲା । ମାମୁଁ ମାଇଁ ଉଭୟେ ମୋତେ ଆଦର କରୁଥିଲେ । ଭୋଜନ କକ୍ଷରେ ଠିକ୍ ହେଲା, ପରଦିନ ବିଦ୍ୟାଳୟରେ ମୋ ନାମ ଲେଖା ହେବ । ଦୁହେଁ ନିଜ କାମକୁ ବାହାରି ଯାଆନ୍ତି । ମୋ ଲାଗି ଖାଇବା ଦାଣ୍ଡ ଚୁଲି ଉପରେ ଥୁଆ ହୋଇଥାଏ ।

ମାମୁଁ କହିଲେ—ଶରତ୍, ଆଜିଠୁଁ ଏହା ତୋର ନୂଆ ଘର ହେଲା । ବିଦ୍ୟାଳୟରୁ ଫେରି ଆସିଲେ ବହି କାଠ ଓ ବୋତଲ ଆଣି ଚୁଲି କଡରେ ରଖିଦେବୁ । କାଠସବୁ ଘର ଭିତରେ ଶ୍ରେଷ୍ଠ କରିଦେବୁ । ଚୁଲିଟା ବି ବେଳା ବେଳା ଲଗାଇ ଦେଇଥିବୁ । କଳସୁ ବାଲ୍ଟିଏ ପାଣି ଆଣି ରଖିବୁ । ଏସବୁ କାମ ସାରି ପଢାପଢ଼ି କରିବୁ ।

ସତକୁ ସତ ମାମୁଁ ମୋତେ ନେଇ ବିଦ୍ୟାଳୟରେ ଛାଡିଦେଲେ । ଶିକ୍ଷକଙ୍କ ସହିତ ମଧ୍ୟ ପରିଚୟ କରାଇଦେଲେ । ସେଠାରେ ମୋର ସମୟ ଖୁବ୍ ଭଲରେ କଟିଲା । ପାଠ ବି ମୋତେ ଅତି ସହଜବୋଧ ହେଲା ।

ଦ'ପହରରେ ଖେଳଛୁଟି ହେଲା । ମୁଁ ପଡିଆରେ ଯାଇ ଠିଆ ହେଲି । ଦଳେ ପିଲା ଆସି ମୋତେ ଘେରିଗଲେ । ତା' ଭିତରୁ ଜଣେ ପଚାରିଲା— କେଉଁଠୁ ଆସିଲୁ ?

ଚଟାପଟ ଜବାବ ଦେଲି—ଜାଜପୁରରୁ ।

ଭାରି ପିଆଜିଆ ମନେକରୁଛୁ ତୁ । ପିଲାଟି ରାଗ ହୋଇ କହିଲା ।

ଦେଖ୍, ଉପରେ ପଡି ଗୁହଁ ଗୁହଁ କଥା କର ନାହିଁ—ମୁଁ ସାବଧାନ କରିଦେଲି ।

ଏଁ, ଏତେ ବଡ଼ପଣ ! ଜାଣୁ କାହା ସହିତ କଥା ହେଉଛୁ ?

ତୁ ବି ମୋତେ ଜାଣି ରଖ ।

ଭଲ ହେବନି, ଏମିତି କଥା କହିଲେ ।

ତୁ ବି ଏମିତି ବଢ଼ି ଲଢ଼ି କଥା କହନା ।

ପିଲାଟି ମୋ ଆଡକୁ ଚେଇଁ ଆସିଲା । ମୁଁ ମୋ ଜାଗାରୁ ଅଧେ ପଛକୁ ହଟିଲି ନାହିଁ ।

ପିଛରୁ କିଏ ତାହାକୁ ଠେଲିଦେଲା । ସେ ମୋ ଉପରେ ଆସି ପଡିଲା । କୋରରେ ଧକ୍କା ଦେଇ ମୁଁ ତାହାକୁ ଦୂରେଇ ଦେଲି ।

ପିଲାଟି କ୍ରୁଦ୍ଧ ଆଖି ଘୂରାଇଲା—ମୋତେ ଧକ୍କା ଦେଲୁ କାହିଁକିରେ ?

ମୁଁ ବ ଚଢ଼ାଗଳାରେ ଜବାବ. ଦେଲି—ମୋ ପାଖକୁ ମାଡ଼ ଆସିଲୁ କାହିଁକି ?

ପଛରୁ ପେଲଖାଇ ସେ ପୁଣି ମୋ ଉପରେ ଆସି ପଡ଼ିଲା । ତା ମୁହଁ ଉପରେ ମୁଁ ଗୋଟାଏ ମୁଥ ବସାଇଦେଲି । ପିଲାଏ ରଡ଼ି ଛାଡ଼ିଲେ, ଚଉଦିଗୁ ମୋତେ ଘେରିଗଲେ, ବାର ବାର ମୁଥି ଚଳାଇବାକୁ ସେମାନେ ସାମନାରୁ ମୋତେ ବାଧା ଦେଲେ । ମଗ୍ରମଣ ଭିତରେ ଜଣେ ତଳେ ପଡ଼ିଗଲା । ସେମାନେ ତାହାକୁ ଟେକି ଆଣି ପୁଣି ମୋ ଉପରକୁ ଠେଲି ଦେଲେ । ମୁଁ ବ ବାଘ ପରି ତା ଉପରକୁ ଲୁଦ ପଡ଼ିଲି । ଜୋରରେ ମୁଷ୍ଟି ପରେ ମୁଷ୍ଟି ଚଳାଇଲି । ସେମାନଙ୍କୁ ଦେଖାଇଦେଲି, ମୁଁ ଲଜ୍ଜାଳୁ ନୁହେଁ । ମୁଁ ଖାଲି ମାଡ ଖାଏନା, ମାଡ ଦେଇବ ଜାଣେ ।

ଘଣ୍ଟା ପୁଣିବାଜିଲା । ସେମାନେ ଆମ ଦୁହିଁଙ୍କୁ ଟାଣି ଛଡାଇ ଦେଲେ । ସେହିଦନ ମଗ୍ରମଣଟା ସମାନ ସମାନ ହେଲା ।

ଛୁଟି ପରେ ପୁଣି ମଗ୍ରମଣ ସକାଶେ ମୁଁ ତିଆର ହେଉଥିଲି । ମାତ୍ର ସେହି ପିଲାଙ୍କର ଆଉ ଦେଖା ମିଳିଲା ନାହିଁ ।

ଫେରିଲା ବେଳେ ବାଟରେ ଦେଖିଲି, ଗୋଟାଏ ଶଣ୍ଢା ମୁହଁ ପଡ଼ିଛି । ତତ୍କ୍ଷଣେ ସେଟାକୁ ଗୋଟାଇ ନେଲି । ମୁଁ ଉଠେ ଦେଲି ପଥର ବସିଥିଲି । ପୂର ପାଖ ଟିକେ ଚିଲିକ ଶ ସେହି ପଥରଟା ଖୋଲି ପକାଇଲି । ଘରେ ମୁହଁଟାକୁ ଆଙ୍ଗୁଳରେ ଗଳାଇଲି, ହାତକୁ ମୁଠା କଲି । ଘର ଦନ ବଦ୍ୟାଳୟରେ ସେଟା ପିଲମାନଙ୍କୁ ଦେଖାଇଲି, ସେମାନଙ୍କୁ ଫେର ମଗ୍ରମଣ ହେବାକୁ ଡାକିଲି, କିନ୍ତୁ କେହି ବାହାରିଲେ ନାହିଁ । ତେଣୁ ଏହି ଅଙ୍କାର ବିଜୟରେ ମୋର ଆପନ ଦୃଢ ହୋଇଗଲା ।

କିଛି ଦିନ ପରେ ଆଉ ଗୋଟିଏ ନୂଆ ବିପଦ ଦେଖା ଦେଲା ।

ଘରେ ଏକ ମନରେ ବହି ପଢୁଥିଲି । ହଠାତ୍ ବାହାକୁ ଘଣ୍ଟା ବାଜିଲା ମାଁ ଉଠିଯାଇ ଝରକା ଖୋଲିଦେଲେ । ଏ ସମୟରେ ମାଲିକ ପଣି ଆସିଲେ । ତାହାଙ୍କ ପଛତ ମୋତେ ପଡ଼ିଚିତ କର ଦିଆଗଲା । ମୁଁ ତାଙ୍କ ସହିତ ହାତ ମିଳାଇଲି । ସେ ଏ ମୋ କଥା ପଚାରିଲେ—ଯାହା ହେଉ, ତୁମ ଭଲ

ହେଲା । ଏ ଘରକୁ ପୁଣି ପିଲାଟିଏ ଆସିଲା ।

ଅଗରୁ ମାଲିକଙ୍କ ପୁଅଟି ମରଯାଇଥିଲା । ସମବୟସୀ ।

ତେବେ ମୁଁ ତାହାଙ୍କ କଥା କିଛୁ ବୁଝିପାରିଲି ନାହିଁ । କିଛୁ ସମୟ ନୀରବରେ ମୁଖପୋଡି ରହି ମାଲିକ ମୋତେ ଅନାଇଲେ । ମୋ କୋଠରୀଟାକୁ ଠାରି ଦେଇ ସେ ପଚାରିଲେ—ବୋଧହୁଏ ତୁ ସେହି ଘରେ ଶୋଉଛୁ !

ହଁ—ଜବାବ ଦେଲି ।

ମୋ ପୁଅଟି ବି ସେଠି ଶୋଉଥିଲା—ସେ ବିରସ ବଦନରେ କହିଗଲେ, ତାପରେ ସେ ମୁହଁ ଓଲାଇ ଚାଲିଗଲେ ।

ମାମୁଁଙ୍କ ପାଖକୁ ଡରି ଡରି ଯାଇ ଗୁହାରି କଲି—ସେହି କୋଠରିରେ ଶୋଇବାକୁ ମୋତେ ଖୁବ ଡର ଲାଗୁଛି ।

କାହିଁକି ? ପିଲାଟି ସେଠି ମରିଯିବାର ଶୁଣି ?

ହଁ—ମୁଁ ଥରି ଥରି କହିଲି ।

ସେଥିରେ ତୋର ଡରିବାର କିଛି ନାହିଁ । ନହେଲେ ନା ହେଲେ ତ ଆମ ସମସ୍ତଙ୍କୁ ମରିବାକୁ ପଡ଼ିବ । ମାମୁଁ ମୋତେ ବୁଝାଇଲେ ।

ତଥାପି ମୁଁ ଭୟରେ ମାମୁଁଙ୍କୁ କହିଲି— ଆଉ କେଉଁଠି ଶୋଇବାର ଜାଗା ନାହିଁ ?

ମାମୁଁ ସେକଟୋକ ମନା କଲେ—ନା ।

ତାହା ହେଲେ ସେହି ସୋଫାଟାରେ ତ ଶୋଇ ପାରିବି—ମୁଁ ସୂଚନା ଦେଲି ।

ନା— ମାଇଁ ଦୃଢ଼ ଗଳାରେ ବାରଣ କଲେ ।

ଶେଷରେ ଅନ୍ଧାରୁଆ କୋଠରିକୁ ମୁଁ କୌଣସି ମତେ ପଶିଗଲି । ଭୟରେ ଥରିଲି । ମନେ ମନେ ଭାବିଲି, ଯଦି ମଲା ପିଲାଟା ଆସି ମୋ ସାମନାରେ ହାଜର ହୁଏ ।

ଅବଶେଷରେ ବିଛଣା ଉପରକୁ କୁଦିପଡ଼ି, ମୁଣ୍ଡ ଉପରେ ଚଦରଟା ଘୋଡ଼ାଇ ଦେଲି । ତଥାପି ରାତିରେ ମୋତେ ନିଦ ମାଡ଼ିଲା ନାହିଁ ।

ପର ଦିନ ସକାଳେ ମୋ ମୁହଁ ମନ୍ଦାର ଫୁଲ ପରି ନାଲି ଟହ ଟହ ଦିଶିଲା । ଏହା ଦେଖି ମାମୁଁ ପଚାରିଲେ ତୋର ରାତିରେ ବୋଧହୁଏ ନିଦ ଭଲ ହୋଇ ନାହିଁ ?

ମୁଁ ସେଠି ଶୋଇ ପାରିବି ନାହିଁ - ଆକୁଳରେ ମୁଁ ଜଣାଇଲି ।

ମାମୁଁ ବୁଝାଇଦେଲେ - ସେମିତି ମିଛିକିଆ ଚିନ୍ତା ଛାଡ଼ିଦେ ।

ରାତିଟା ଆଗ ପରି କଟିଲା । ଭୟରେ ମୁଁ ଆଖି ପତା ବନ୍ଦ କରି ପାରିଲି ନାହିଁ । ମାମୁଁ ମାଇଁ ଶୋଇ ପଡ଼ିଲେ । ମୁଁ ଧୀରେ ଧୀରେ ବାହାର ଘରକୁ ଯାଇ ସୋଫାଟାରେ ଦେହ ମେଲି ଦେଲି ।

ସକାଳେ ମାମୁଁ ମୋତେ ଉଠାଇ ଦେବାରୁ ମୋ ନିଦ ଭାଙ୍ଗି-ଗଲା । ସେ ମୋତେ ସହସା ପଚାରିଲେ - ତୁ ଏଠାରେ କାହିଁକି ଶୋଇଛୁ ?

ଅନୁନୟ କଲି - ମୋତେ ଖ୍ରୀଷ୍ଟର ଭୂତ ମାରୁଛି । ମୋତେ ସେହି ସୋଫାଟାରେ ଶୋଇବାକୁ ଦିଅନ୍ତୁ ।

ସେ ବିଲକୁଲ ମନା କରି ଦେଇ ଚାଲିଗଲେ ।

ମାମୁଁ ଟେବୁଲ ଉପରେ ବସି ଅଫିସ କାମ କରୁଥିଲେ । ମୁଁ ତାଙ୍କୁ ଯାଇ ନିବେଦନ କଲି - ମୋତେ ଜାକ୍‌ସନ୍‌କୁ ପଠାଇ ଦିଅନ୍ତୁ ।

ସେ ସିଧା ସଳଖ ଥରେ ମୋ ମୁହଁକୁ ଅନାଇଲେ, ଆଉ ପଚାରିଲେ-ଏଠି କଅଣ ତୋତେ ଭଲ ଲାଗୁ ନାହିଁ ?

ନା - ସବୁ କଥାଟା ଖୋଲି କହି ଦେଲି ।

ହେଉ ମାମୁଁ ଏଥରେ ଚୁପ୍ ରହିଲେ ।

—*—

# ॥ ଏଗାର ॥

ଶନିବାର ଦିନ ମାମୁଁ ମୋତେ ରେଲଗାଡ଼ିରେ ବସାଇ ଦେବା ଲାଗି ଷ୍ଟେସନକୁ ଆସିଲେ ! ସେତେବେଳେ ମୋତେ ନିଜକୁ ଅପରାଧୀ ବୋଲି ମନେ ହେଲା । ତେଣୁ ମୁଁ ତାହାଙ୍କ ମୁହଁକୁ ମୋଟେ ଅନାଇ ପାରିଲି ନାହିଁ । ଟିକେଟ୍‌ଟି ହାତରେ ଧରି ମୁଁ ତରବରରେ ଗାଡ଼ିର ଡବା ଭିତରକୁ ଉଠିଲି । ଗାଡ଼ି ଛାଡ଼ିଲା ବେଳେ ଝରକାବାଟେ ହାତ ଗଳାଇ ମାମୁଁଙ୍କୁ କୌଣସି ମତେ ନମସ୍କାର କଲି । ଆଖି ବୁଜି ଆସନର ପଛକୁ ଆଉଜି ପଡ଼ିଲି । ବାଟ ସାରା ମୋର ହୃଦରେ କଟିଗଲା ।

ମାଆ ବିଛଣାରେ ପଡ଼ିଥିଲେ । ତେବେ ଏବେନେ ଟିକିଏ ଭଲ ଥିଲେ । ତାହାଙ୍କୁ ଦେଖି ମୁଁ ଭାରି ଖୁସି ହେଲି । ଡାକ୍ତରମାନେ ମାଆଙ୍କର ଅପରେସନ କଥା କହୁଥିଲେ । ମନେ ମନେ ଭାବିଲି, ଅପରେସନରେ କିଛି ଫଳ ହେବ ନାହିଁ । ସେ ଏବେନେ ଯେମିତି ଅଛନ୍ତି ସେମିତି ଥାଆନ୍ତୁ । କାରଣ ମୋର ଏଥିରେ ପ୍ରବଳ ଭୟ ଓ ଅଶଙ୍କା ଥିଲା । ମୁଁ ଏକଥା କାହାକୁ କହେଇ ନ ଥିଲି । ମୋତେ ବିଦ୍ୟାଳୟରେ ଆଉ ନାମ ଲେଖାଇବାକୁ ପଡ଼ିଲା ନାହିଁ । ପଛ ଅଗଡ଼ାରେ ମୁଁ [illegible] ବୁଲି [illegible] । [illegible] ପାଠେଇଙ୍କୁ ପୋଡ଼ାଉଥିଲି, [illegible] ଫୁଲ [illegible] ମାଳି [illegible] ଆଙ୍କୁଥିଲି । [illegible] ବସି ବସି [illegible] ବସୁଥିଲି ।

ଅପରେସନ ଲାଗି ମାଆଙ୍କୁ କଟକ ହସ୍ପିଟାଲକୁ ନେଇଯିବା ପାଇଁ [illegible] ମାମୁଁ କାଠଯୋଡ଼ରୁ ଆସିଲେ । ଗଲା ବେଳେ ମୁଁ [illegible] ତରବରରେ [illegible] ଧରି ନେଇ ସେମାନଙ୍କ ସହିତ ରେଲଗାଡ଼ିରେ ଚଢ଼ିଲି । ବାଟ ସାରା ମୁଁ [illegible] ଭାବି ବସି ରହିଲି । ମାଆଙ୍କୁ ଟିକିଏ ଅନାଇବାକୁ [illegible] । ମୋର ସାହସ କୁଳୋଉ ନ ଥିଲା । ଷ୍ଟେସନରୁ ଗୋଟାଏ ଭଡ଼ା ଟେକ୍ସିରେ ମାଆଙ୍କୁ ଡାକ୍ତରଖାନାକୁ ନିଆଗଲା । ଡାକ୍ତର ଧଳା ପୋଷାକ ପିନ୍ଧି ତାହାଙ୍କ କ୍ଲିନିକ୍ ଭିତରୁ ବାହାରି ଆସିଲେ । ମୋ ସହିତ ହସି ହସି ହାତ ମିଳାଇଲେ ।

ମାଆଙ୍କୁ ଭିତରକୁ ନେଇଗଲେ । ମାମୁଁ ଗୋଟିଏ ଭଡ଼ାଘର ଓ ଜଣେ ଯେବକାକୁ ଖୋଜବା ଲଗି ବାହାର ଗଲେ । ବାହାର ପରେ ଏକା ବସି ବସି ମୋତେ ଭାରି ଡର ମାଡ଼ିଲା । ପ୍ରାୟ ଘଣ୍ଟାକ ପରେ ଡାକ୍ତର ବାହାର ଆସିଲେ । ପଚାରିଲି—ମାଆ କେମିତି ଅଛନ୍ତି ?

ବେଶ୍ ଭଲ — ଡାକ୍ତର ଜବାବ ଦେଲେ ।

ଭଲ ହୋଇ ଯିବେ ତ ?

କିଛି ଦିନ ପରେ ତାହା କହି ହେବ ।

ତାହାଙ୍କୁ ଟିକଏ ଦେଖି ପାରିବ ?

ନା, ଏବେ ନୁହେଁ ।

ମାମୁଁ ଗୋଟାଏ ଆମ୍ବୁଲାନ୍ସ ଗାଡ଼ି ନେଇ ଫେରି ଆସିଲେ । ଦୁ'ଜଣ ଲୋକ ଷ୍ଟ୍ରେଚରରେ ମାଆଙ୍କୁ ଶୁଆଇ କ୍ଲିନିକ୍ ଭିତରୁ ନେଇ ଆସିଲେ । ମାଆ ଆଖି ବୁଜି ଅଚେତ ହୋଇ ଶୋଇଥିଲେ । ଖଣ୍ଡିଏ ଧଳା କପଡ଼ା ତାହାଙ୍କ ଉପରେ ପଡ଼ିଥିଲା । ତାହାଙ୍କୁ ଟିକଏ ଛୁଇଁବାକୁ ମୋର ଭାରି ମନ ହେଉଥିଲା । କିନ୍ତୁ ମୁଁ ପାଦେ ବି ଚାଲି ପାରୁ ନଥିଲି ।

ମାମୁଙ୍କୁ ପଚାରିଲି—ମାଆଙ୍କୁ କେଣେ କୁଆଡେ ନେଇଗଲେ ?

ମାମୁ ଜବାବ ଦେଲେ ଡାକ୍ତରଖାନାରେ କଲା ଲୋକଙ୍କ ରହିବା ଲାଗି କିଛି ବ୍ୟବସ୍ଥା ନାହିଁ ।

ସେହି ଦୁ'ଜଣ ଲୋକ ମାଆଙ୍କୁ ଷ୍ଟ୍ରେଚରରୁ ନେଇ ଆମ୍ବୁଲାନ୍ସ ଗାଡ଼ି ଭିତରେ ଶୁଆଇ ଦେଲେ । ତା'ପରେ ଗାଡ଼ି ଛୁଟିଦେଲା । ମୁଁ ଠିଆ ଠିଆ ସବୁ କିଛି ଦେଖୁଥିଲି । ଠିକ୍ ସେତିକି ବେଳେ ଅନୁଭବ କଲି, ସତେକି ଆଜି ମାଆ ମୋଠୁଁ ଚିର ବିଦାୟ ନେଲେ ।

ମାମୁ ଓ ମୁଁ ଯାଇ ଗୋଟିଏ ଭଡ଼ା ଘରେ ରହିଲୁ । ମାମୁଁ ପ୍ରତି ସକାଳେ ମାଆଙ୍କୁ ଦେଖିବାକୁ ଯାଉଥିଲେ, ଆଉ ମୁହଁ ଓହଳାଇ ଫେରି ଆସୁଥିଲେ । ସେ ସବୁବେଳେ ଚୁପ୍‌ଚାପ ବସି ରହୁଥିଲେ । ଅବଶେଷରେ ମାଆଙ୍କୁ [illegible] ଘରକୁ ନେଇଯିବା ଲାଗି ସେ ଦିନେ ମୋତେ କହିଲେ ।

ପଚାରିଲି—ମାମୁଁ, ସତରେ ମାଆଙ୍କର କଅଣ ଆଉ ବଞ୍ଚିବାର ଆଶା ନାହିଁ ?

ସେ ତ ଭୀଷଣ ବେମାର—ମାମୁଁ ଜବାବ ଦେଲେ ।

ଆମେ ସେଠାରୁ ବାହାରିଲୁ । ଗୋଟିଏ ମାଲଗାଡ଼ିରେ ମାଆ ଷ୍ଟ୍ରେଚରରେ ଶୋଇ ଶୋଇ ଆସିଲେ । ବାଟ ସାରା ମାମୁ ତାହାଙ୍କ ଦେଖାଶୁଣା କରୁଥିଲେ । ମାଆ ଘରକୁ ଫେରିଲେ, ଅନେକ ଦିନ ବେଦନାରେ ଛଟପଟ ହୋଇ କାଟିଲେ ।

ଦିନେ ରାତିରେ ମାଆ ମୋତେ ତାହାଙ୍କ ବିଛଣା କତିକି ଡାକିଲେ । କାନ୍ଦି କାନ୍ଦି ମୋତେ କରୁଣ ଗଳାରେ କହିଲେ—ଏତେ ଭୀଷଣ ବେଦନା ମୁଁ ଆଉ ସହି ପାରୁ ନାହିଁ । ମରିଯିବାକୁ ଇଚ୍ଛା ହେଉଛି ।

ମାଆଙ୍କର ଗୋଟିଏ ହାତ ମୁଠାଇ ଧରିଲି, ତାହାଙ୍କୁ ଭଲ ହେବାକୁ ଅନୁରୋଧ କଲି । ମୋତେ ଭୀଷଣ ଭୟ ଲାଗିଲା । କୌଣସି ମତେ ମାଆଙ୍କ ଉପରେ ଆଉ ରାଗି ପାରିଲି ନାହିଁ । ମୁଁ ତାଙ୍କର ସେବା କରିବାକୁ ଲାଗିଲି । ଦିନକୁ ଦିନ ମାଆ ଦୁର୍ବଳ କ୍ଷୀଣ ହେଉଥିଲେ ।

ମାଆଙ୍କୁ ପୁରା ଦଶ ବରଷ ବିଛଣାରେ ପଡ଼ି ରହିବାକୁ ହୋଇଥିଲା ।

ସେତେବେଳେ ମୋର ବୟସ ମାତ୍ର ବାର ବରଷ । ସ୍କୁଲ ଗୋଟାଏ ବରଷ ବି ମୁଁ ବୋର୍ଡିଂରେ କଟାଇ ନ ଥିଲି । ଏହି ସମୟରେ ମୋ ଜୀବନରେ ନାନା ରକମ ଅନୁଭୂତି ଲାଭ କଲି । ସେସବୁ କଦାପି ମୁଁ ଭୁଲି ପାରିବି ନାହିଁ । ମୋ ପରି ଯେ ଦୁଃଖୀ ସେ କେବଳ ବୁଝି ପାରିବ ମୋର ସେକାଳର କଷ୍ଟର କଥା ।

ସେହି ଅଭାବ ଅନଟନ ସମୟରେ ମୋତେ ଘରର ସକଳ ଭାର ନେଇ ରନ୍ଧନ କରିବାକୁ ପଡ଼ିଲା । କିନ୍ତୁ କାମଧନ୍ଦା ଯୋଗାଡ଼ କରିବା ସହିତ ମୁଁ ପଢ଼ାକୁ ଗୋଡ଼ କାଟିଲି ।

—*—

# ॥ ଚାର ॥

ଘର ଭିତରୁ କବାଟ କିଳି ଦେଇ ମୁଁ ଘରେ ଆଣ୍ଠୁ ମାଡ଼ି ବସି ଉପାସନା କରୁଥିଲି । ଭଗବାନଙ୍କୁ କାତର ଗଳାରେ ଡାକୁଥିଲି । ମୁଖରେ ଯାହା ସବୁ କହୁଥିଲି ସେଥିରେ ନିଜକୁ ହସ ମାଡୁଥିଲା । ତେଣୁ ମନେ ମନେ ଭାବିଲି— ନା, ମୁଁ କେବେ ଭଗବାନଙ୍କୁ ଡାକି ପାରିବ ନାହିଁ ।

ତେବେ ଉପାସନା ସମୟରେ ସହସା ମୋର ମନେ ପଡ଼ିଲା, ବର୍ଷକ ତଳେ ପଢ଼ିଥିବା ଲେଖକ ସ୍ୱାମୀମାନଙ୍କ ଜୀବନୀର ଗୋଟିଏ ପରିଚ୍ଛେଦର କଥା । ଭାବିଲି, ହଁ ସେଇଟା ଭଲ । ସେମାନଙ୍କୁ ଆଧାର କରି ମୁଁ ଗୋଟିଏ କାହାଣୀ ଲେଖିବି । ନା, ସେମାନଙ୍କୁ ସବୁଙ୍କୁ ନେଇ ନୁହେଁ, କେତେ ଜଣଙ୍କୁ କେବଳ ।

ତହୁଁ ଲେଖି ବସିଲି । ଭାରତୀୟମାନଙ୍କ ଜଣେ ଅପରୂପ ସୁନ୍ଦରୀ ଝିଅ ଥିଲା । ସେ ନିବିଡ଼ ବଣରେ ଶୀତଳ ଛାଇରେ ଫୁଲ ଫଳ ନାନାଦି ନେଇ କୂଳରେ ସେ ଏକା ବସିଥିଲା । ଆକୁଳ ଅନ୍ତରେ ସେ ତାହାର ଆଗମନକୁ ଅପେକ୍ଷା କରୁଥିଲା ।

ଏବେ ଜଣେ ଭାରତୀୟ ଝିଅକୁ ନାୟିକା କରି ମୁଁ କାହାଣୀଟି ଲେଖି-ଯିବି । ହଁ, ତାପରେ କଅଣ ଲେଖିବି ? ଏହାର ଶେଷ କଅଣ ହେବ ? ଭାବିଲି, ଝିଅଟି ସହସା ଉଠି ପଡ଼ିବ । ସଙ୍କା ପାଣି ପୋଖରୀକୁ ଧୀରେ ଧୀରେ ଆଗେଇ ଯିବ । ଏହା ଅଲୌକିକ ଦୃଶ୍ୟମାନେ ସେ ମୁହଁ ଉଙ୍କି କରିବ, ପାଣିକୁ ଡେଇଁ ପଡ଼ିବ, ତା ଦେହଟା ଡିଙ୍ଗେଇ ଯିବ । ମରଣ କାଳରେ ତା ମୁଖରୁ ଟିକେ ହେଲେ ଶବଦ ବାହାରିବ ନାହିଁ । ଅବଶେଷରେ କଳା ଗଭୀର ନାଭି ଅଂଶ ଖସିବ । ଅଞ୍ଜଳିଜୀବା ଫୁଲକୁ ସମାଧିକୁ ନେଇ ତା କଳା ପଦ୍ମରେ ଆଦରେ ମେଲେଇ ଦେବ । ନିଶ୍ଚଳ ନୀରବ । କେବଳ ଗଛଗୁଡ଼ିକ ଧୀରେ ଧୀରେ ପବନରେ ଦୋହଲୁଥିବ [illegible] ମାଣିକ ।

ମଧ୍ୟା [illegible] ମୁଁ [illegible] । [illegible]

କାହାଣୀଟି ପଢ଼ିଲି । ମାଲୁମ ହେଲା, ଏତେବଡ଼ କାହାଣୀ ଭିତରେ କେଉଁଠି ଗୋଟିଏ ଫାଙ୍କ ରହିଗଲା । ଏପରି ପରିବେଶରେ କଅଣ କାହାଣୀ ଜମିବ ? ହେଉ ପଛକେ ବାଜେ କାହାଣୀଟାଏ, ମୁଁ ନିଜେ ଲେଖିଛି ! ଆଗରୁ ତ ମୋଟେ କିଛି ଲେଖି ନ ଥିଲି । ହେଉ, ଏଟା କାହାକୁ ପଢ଼ି ଶୁଣାଇବି ? ଘରେ ତ ସେପରି କେହି ଲୋକ ନାହାନ୍ତି । ଯେଉଁମାନେ ଅଛନ୍ତି, ଏହା ଶୁଣି ସେମାନେ ଅବଶ୍ୟ ମୋତେ ପାଗଳ ବୋଲି ଠଉରାଇବେ ।

ତେବେ ପଡ଼ୋଶୀ ଘରର ସେହି ଝିଅଟିକୁ ଶୁଣାଇଲେ କିପରି ହୁଅନ୍ତା ? ଝିଅଟି ଗଦାଏ ଅଇଁଠା ବାସନ କୁସନ ଧୋଉଥିଲା । ମୁଁ ତାହାକୁ ପାଖକୁ ଡାକିଲି । ସାବଧାନ କରିଦେଲି, କାହାକୁ ଯେମିତି ଏହା ନ କହେ । ତା ପରେ କାହାଣୀଟି ବଡ଼ ପାଟିରେ ପଢ଼ି ତାହାକୁ ଶୁଣାଇଲି । ଶେଷରେ କାହାଣୀଟି ସରିଲା । ସେ ବୋକାଙ୍କ ପରି ଟିକିଏ ହସି ଦେଲା, ଆବାକାବା ହେଲା, ଚକିତରେ ଆଖି ଟେକି ମୋତେ ପଚାରିଲା—ଏଟାକୁ ନେଇ କଅଣ କରିବ ?

ଜବାବ ଦେଲି—କିଛି ନାହିଁ ।

ତାହା ହେଲେ ଲେଖିଲ ବା କାହିଁକି ?

ମୋ ମନ ହେଲା, ତେଣୁ ଟାଣେଇ ଲେଖିଲି ।

ଏତେ କଥା ତ ତମେ ଏହି ଗପଟିରେ ବନେଇ ଚୁନେଇ ଲେଖିଛ । ଏସବୁ କଥା ତୁମେ କେଣେ ଜାଣିଲ ?

ମୁଁ ଥରେ ଧୀରେ ମଥା ହଲାଇଲି । ମୁହଁର ପାଖରେ ହାତ ବୁଲାଇ ଆଣିଲି । ତା ପରେ ଲେଖା କାଗଜଗୁଡ଼ିକ ପକେଟରେ ପୂରାଇ ଦେଲି ।

ଝିଅଟିକୁ ତେରଚ୍ଛା ଚାହାଣିରେ ଅନାଇ ନିଜର ବାହାଦୁରି ଦେଖାଇ କହି ପକାଇଲି—ଓଃ, ଏଟା କଅଣ ଦେଖୁଛ ! ହା' ଠାରୁ ବଳି ଅଧିକ ଭେଳେ ସରସ କାହାଣୀ ମୁଁ ଅଧ ଘଣ୍ଟାକରେ ଲେଖି ପାରେ ।

ଝିଅଟି ମୋତେ ଝଟମଟ କରି ଅନାଇ ରହିଥିଲା । ତା ପାଟିରୁ କିଛି କଥା ବାହାରୁ ନାହିଁ ।

ପୁଣି ନରମ ଗଳାରେ ମୁଁ ତାହାକୁ ବୁଝାଇ ଦେଲି । ମୋତେ ଧୂନିଆ

ଏତେ ସବୁ ଗହନ କଥା ମାଲୁମ ନାହିଁ । ସହସା ମଗଜରେ ଗୋଟାଏ ଖିଆଲ ପଶିଲା । କିଛି କଥା ମନକୁ ଆସିଗଲା ଲେଖି ପକାଇଲି ।

ଝିଅଟି ଆଉ ଥରେ ମୋତେ ପଚାରିଲା—ଏଟାକୁ ନେଇ କଅଣ କରିବ ?

ଜୁରିତେ ଜବାବ ଦେଲି—କିଛି ନାହିଁ ।

ମୋ ଲିଖିତ କାହାଣୀ ଶୁଣି ଝିଅଟି ଯେ ମନେ ମନେ କଅଣ ଭାବୁଥିଲା, ହୁଏତ କେବଳ ଭଗବାନଙ୍କୁ ହିଁ ତାହା ଜଣା । ଏପରି କାହାଣୀ ଲେଖି ନିଜକୁ ଦୁନିଆରେ ଟିକିଏ ଦେଖାଇବା ଲାଗି ମୋ ଭିତରେ ଗୋଟାଏ ପ୍ରବଳ ଇଚ୍ଛା ଅଛି । ତାହା ଛଡ଼ା ମୋର ଆଉ କିଛି ଲୋଡ଼ା ନାହିଁ ।

ତେବେ ମୋ କାହାଣୀଟି ପଢ଼ି ସାରିଲା ପରେ, ଝିଅଟିର ଅବାକ ହେବାର ଢଙ୍ଗ ମୁଁ କେବେ ଭୁଲି ପାରିବି ନାହିଁ । କାହାଣୀର ରସ ସେ ପୂରାପୂରି ଗ୍ରହଣ କରିପାରି ନ ଥିଲା । ଏହା ଭାବିଲାରୁ ମୋତେ ଅକାରଣ ହସ ମାଡ଼ିଲା ।



## ॥ ତେର ॥

ଅନ୍ଧ ମାଆ ଓ ଅଙ୍ଗ ମାଉସୀଙ୍କର ମୋ ପ୍ରତି ମନୋଭାବ ବଦଳି ଚଲା । ମୁଁ ଏବେବେଳେ ନିଜକୁ ଯାଉଛି ବୋଲି ସେମାନେ ପ୍ରାୟ ଧରି ନେଇଥିଲେ । ଇତି ମଧ୍ୟରେ ମାଆ ଟିକିଏ ଭଲ ହୋଇଯାଇଥିଲେ । ସେ ଆଦରରେ ମୋତେ ପାଖଲେଇଲେ, ମୁଁ ଯେମିତି ଏଣିକି ମନ ଲଗାଇ ପଢ଼ାଶୁଣା କରେ, ଅନେକ ସମ୍ଭୁକ ଅପଦେଶ କଲେ ।

ପାଠ ଶିଖା ଚାଲିବ ! କିନ୍ତୁ ବହିତକ କେଉଁଠୁ ପାଇବି ? ଅନ୍ଧ ମାଆ ତ କିଛି ବହିପତ୍ର କିଣି ଦେବାକୁ ସିଧା ସଳଖ ମନା କଲେ । କେଣ୍ଡିଏ ବହି

ସକାଶେ ମୋତେ ମାସ ମାସ ଅପେକ୍ଷା କରିବାକୁ ପଡ଼ିଲା । ନାମାପଟ୍ଟାର କଥା ବି ତାଠୁଁ ଅଧିକ । ଏପରିକି ଆତ୍ମମାଆ ରାଗରେ ମୋତେ ଆଦେଶ ଦେଲେ ଏଣିକି ମୋ ନାମାପଟ୍ଟା ସବୁ ମୋତେ ନିଜେ ସଫା କରିବାକୁ ହେବ । ଖାଦ୍ୟ ଭିତରେ ଖାଲି କଡ଼ୁ ଛତୁ ଓ ପନିପରିବା । ସେଥିରେ ମୋତେ ଦରପେଟା ରହିବାକୁ ପଡ଼ିଲା । ସେଟା ଧୀରେ ଧୀରେ ମୋର ଅଭ୍ୟାସ ହୋଇଗଲା । ଲେଖାପଢ଼ା ଶିଖିବାକୁ ବିଦ୍ୟାଳୟକୁ ଯାଉ ନ ଥିଲି । ତେବେ ଗୋଟାଏ ନୂଆ ଦୁନିଆ ସହିତ ପରିଚିତ ହେବାକୁ ମୋ ମନଟା ଆକୁଳ ହେଲା ।

ଯାହା ହେଉ, ବିଦ୍ୟାଳୟରେ ନାମ ଲେଖାଇଲି । ପ୍ରଥମ ଦିନ ସିଲଟ ଓ ପେନ୍‌ସିଲ୍ କାଖରେ ଯାକି ବିଦ୍ୟାଳୟର ଅଗଣାରେ ଯାଇ ହାଜର ହେଲି ଅନ୍ୟ ପିଲାଙ୍କ ସହିତ ମିଶିଗଲି । ମୋତେ ନୂଆ ପିଲା ବୋଲି ସେମାନେ ଧରି ନେଲେ । ମୁଁ ମଥାରେ ଗୋଟାଏ ନଡ଼ା ଟୋପି ପିନ୍ଧିଥିଲି । ସହସା ଜଣେ ବଡ଼ୋ ପିଲା ସେଟା ଟାଣି ନେଇ ତଳେ ଫୋପାଡ଼ିଦେଲା । ମୁଁ ତଳୁ ଟୋପି ଉଠାଇ ନେଲି । ଏମିତି ଭାବରେ ଲଗକ ପରେ ଜଣେ ପିଲା ଅଟାରେ ସେଟା ଟାଣି ନେଉଥିଲେ, ଆଉ ମୁଁ ତଳୁ ଗୋଟାଇ ଆଣୁଥିଲି ।

ଜଣେ ପିଲା ଖେଳେଇ ହେଇ ମୋତେ ପଚାରିଲା—ତୋ ମାଆ ଏହି ଟୋପିଟା ତୋତେ କିଣି ଦେଇଛନ୍ତି ?

ମୁଁ ଆଉ ସହି ପାରିଲି ନାହିଁ । ତାହାକୁ ସାବଧାନ କରିଦେଲି - କଅଣ କହୁଛୁ ତୁ ନିଜେ ଜାଣୁ ।

ସେହି ପିଲାଟି ବଡ଼ ପାଟିରେ କହି ଉଠିଲା—ଦେଖରେ ଏଥର ମୁହଁ ଖୋଲିଲା !

ଅନ୍ୟ ପିଲାମାନେ ହସି ହସି ଗଡ଼ିଗଲେ ।

ଭଲ ପିଲାଟି ଭଳି ସେ ପଚାରିଲା -- ଭାଇ ରୁ କେଉଁଠୁ ଆସିଲୁ ?

କେଉଁଠୁ ଆସିଲି, ତୋର ସେଥିରେ କି ଯାଏ ଆସେ ? — ମୁହେଁ ମୁହେଁ ମୁଁ ଜବାବ ଦେଲି ।

ଦେଖ, ବେଶି ଡେରିମେରି କଲେ ଗୁଲି ଉଡ଼ାଇ ଦେବା ।

ସତେ ! ମୋର ଯାହା ଖୁସି ସେୟା କରିବି ।

ପିଲାଟି ତଳୁ ଗୋଟାଏ ଟେକା ଗୋଟାଇ ଆସି ମୋ ଆଡ଼କୁ ଖେଦି ଆସିଲା । ମୁଁ ବି ସାମନାକୁ ଧସେଇ ଗଲି, ଉଚ୍ଚ କଲି — ଫୋପାଡ଼ ନା ଦେଖି !

ମୁଁ ପହିଲେ ଟିକଏ ନଡ ବଡ ହେଲି, ତାପରେ ତା କଡକୁ ମାଡ଼ିଗଲି, ତା ହାତରୁ ଟେକାଟା ଛଡ଼ାଇ ନେଲି, ଗୋଟାଏ ଧକ୍କାରେ ତାହାକୁ ପେଲି ପେଲି ତଳେ ପକାଇ ଦେଲି । ତାପରେ ତାହାକୁ ମାଡ଼ି ବସି ଘୁଷି ପରେ ଘୁଷି ଲଗାଇଲି । ଅନ୍ୟ ପିଲାମାନେ ଜୋରରେ ପାଟିଗୋଳ କଲେ ।

ଏତିକି ବେଳେ ଆଉ ଜଣେ ପିଲା ଆସି ମୋତେ ଜେଉଁଟା ମୁଥା ମାରିଲା ଆଉ ମୋ ଟୋପିଟା କାଢ଼ି ନେଇ ଫୋପାଡ଼ି ଦେଲା । ସେ ଖେଙ୍କି କରି କହିଲା—ତୁ କାହିଁକି ମୋ ଭାଇକୁ ମାରୁଛୁ ?

ତୁମେ ଦୁହେଁ କଅଣ ମୋ ସାଙ୍ଗରେ ଏକା ଲଢ଼ିବ ! ମୁଁ ବି ଜୋରରେ ଧମକାଇଲି ।

ତଥାପି ଉଭୟେ ତେଡ଼ି ଆସିଲେ । ମୁଁ ସହସା ମଥା ପଛରେ ଭୀଷଣ ଆଘାତ ପାଇଲି, ଆଉ ମଥା ବୁଲାଇ ଦେଖିଲି, ଖଣ୍ଡିଏ ଭଙ୍ଗା ଟେକା ମୋ ପିଠିରୁ ଖସି ପଡ଼ିଲା । ହାତ ମାରିଲି, ରକତ ଧାର ଛୁଟିଛି । ମୋ ଅକଲ ଗୁଡ଼ୁମ ହେଇଗଲା । ଥରେ ଏଣେ ତେଣେ ଅନାଇଲି । କେତେ ଖଣ୍ଡ ଭଙ୍ଗା ଟେକା ଭୂଇଁରେ ପଡ଼ିଥିଲା । ହାତରେ ଗୋଟାଇ ଧରିଲି । ପିଲା ଦୁହେଁ ପଛକୁ ହଟିବାକୁ ଲାଗିଲେ । ଖଣ୍ଡିଏ ଟେକା ଫୋପାଡ଼ିଲି, ଜଣକର ପିଠିରେ ବାଜିଲା, ସେ କୁହାଟ ଛାଡ଼ିଲା । ଅନ୍ୟ ଟିକିକି ବିଦ୍ୟାଳୟର ପଡ଼ିଆ ମଝି ଯାଏ ଖେଦି ନେଲି । ଏହା ଦେଖି ଅନ୍ୟ ପିଲାମାନେ ତାଳି ମାରି ହସି ହସି ଗଡ଼ିଗଲେ । ମୋତେ ଘେରି ସାଙ୍ଗ ବହୁତ ସାବାସି ଦେଲେ ।

ଏତିକି ବେଳେ ଜଣେ ଶିକ୍ଷୟିତ୍ରୀ ଧାଇଁ ଆସି ମୋତେ ପଚାରିଲେ— ତୁମେ ହୁଏତ ଟେକା ଫୋପାଡ଼ିଲ ?

ଏ ଜଣେ ପିଲା ମୋତେ ମାରି ଧରି ବସିଥିଲେ—କୈଫିୟତ ଦେଲି ।

ମୋ [illegible]—[illegible] ମୋ ହାତ ଧରି ଟାଣି ନେଇଗଲେ ।

ଗୋଟିଏ କୋଠରୀରେ ସେହି ପିଲ ଦୁଇଟି ଥିଲେ । ସେମାନଙ୍କୁ ଦେଖାଇ ସେ ପଚାରିଲେ—ଏ ଦୁହେଁ ନା ?

ହଁ, ଏମାନେ ମିଶି ମୋତେ ମାରିଲେ ।

ସତହେଲେ ଏ ତ ମୋ ଦେହରେ ହାତ ଦେଲ—ଜଣେ ପିଲ ଅଭିଯୋଗ କଲ ।

ମିଛୁଆ—ମୁଁ ଖୁବ୍ ଟାଣୁଆ ଗଳାରେ କହିଲି ।

ଏଠାରେ ଗୋଳମାଳ କରିବାର ନୁହେଁ-ଶିକ୍ଷୟିତ୍ରୀ ମୋତେ ସାବଧାନ କରାଇଲେ ।

ମୁଁ ଦୃଢ ପ୍ରତିବାଦ କଲି—ସେମାନେ ଯେ ସତ କଥା କହୁ ନାହାନ୍ତି । ମୁଁ ଆଜି ନୂଆ ଆସିଛି, ମୋ ଟୋପିଟା ଛଡାଇ ଦେଲେ ।

ସେ ତ ପହିଲେ ଆମ ଦେହରେ ହାତ ଦେଲ—ପିଲଟି ପୁଣି ଜଣାଇଲ

ଶିକ୍ଷୟିତ୍ରୀ ଆମ ଦୁ ଜଣଙ୍କ ମଝିରେ ଛିଡା ହୋଇଥିଲେ । ମୁଁ ସହସା ସେହି ପିଲାଟିର ଗାଲରେ ଗୋଟାଏ ଆପଡା କଷାଇ ଦେଲି । ସେ ବଡ ପାଟିରେ କାନ୍ଦିଲା ।

ଶିକ୍ଷୟିତ୍ରୀ ଆମକୁ ଛଡାଇ ଦେଲେ । ସେ ଗରଜି ଉଠିଲେ -କେଶ୍ ପିଲା ତ ତୁମେ ! ଏଠି ମାର୍ ଧର କରିବାର ନୁହେଁ ।

ସେ ମୋତେ ବସିବାକୁ ଠାରି ଦେଲେ । ମୁଁ ତାଙ୍କ ଆଦେଶ ପାଳନ କଲି । ତାପରେ ସେ ମୋତେ କହିଲେ - ସାବଧାନ, ତୁମକୁ ଏଥର ଛାଡ଼ିବି ନାହିଁ ।

ମୁଁ ତ କିଛି ଦୋଷ କରି ନାହିଁ - ଅନୁନୟ କଲି ।

ଜାଣେ । ତେବେ ତୁମେ ତ ମୋର ସାମ୍ନାରେ ଜଣେ ପିଲକୁ ମାରିଲ ।

କହିଲି - ମୁଁ ଦୁଃଖିତ !

ସେ ମୋ ନାମ ପଚାରିଲେ । ତାପରେ ସେ ମୋତେ ଆଉ ଏକ କୋଠରୀକୁ ପଠାଇ ଦେଲେ । ପଞ୍ଚମ ଶ୍ରେଣୀରେ ଯାଇ ବସିଲି । ମୋର ନାମ ଲେଖା ହେଲା ।

ରାତି ଦିନ ଖଟିଖଟି ମୁଁ ପଢ଼ାଶୁଣା କଲି । ଦି ସପ୍ତାହରେ ଷଷ୍ଠ ଶ୍ରେଣୀକୁ ଉଠିଲି । ଏଠାକାର ପିଲାଙ୍କ ସାଙ୍ଗରେ ଭିଡ଼ିଗଲି । ମନେ ମନେ ଗୁଣି ହେଲି, ଏବେ ଡାକ୍ତରୀ ପଢ଼ିବାକୁ ଯିବି । କିନ୍ତୁ ଖରଚଟା ଜୁଟିବ କିପରି ?

ମୋ ସହପାଠୀଙ୍କ ଭିତରୁ କେତେକ ସକାଳେ ସନ୍ଧ୍ୟେ କି ଶନିବାର ଦିନଟା କେଉଁଠି କିଛି କାମଦାମ କରନ୍ତି । ସେଥିରୁ ଯାହା ଆୟ ହୁଏ, ସେମାନଙ୍କର ଜମାପଇଟା ଓ ବହିପତ୍ରର ଖରଚ ଚଳିଯାଏ ।

ମୋର ବି ମନ ସକସକ ହେଲା, ଶନିବାର ଦିନ ମୁଁ ଏମିତି ଗୋଟାଏ କାମ କଲେ ତ ହୁଅନ୍ତା ! ଆଉ ମାଆଙ୍କୁ ଏ କଥାଟା ଜଣାଇବାରୁ, ସେ ରାଗରେ ନିଆଁ ହେଇଗଲେ । ମୋତେ କଟମଟ କରି ଅନାଇ ଯୁକ୍ତି ବାଢ଼ିଲେ ପୁରାଣରେ ପରା ଅଛି, ସପ୍ତାହର ଶେଷ ଦିନ ହେଉଛି ଭଗବାନଙ୍କର ବିଶ୍ରାମର ଦିନ । ମାନେ ଶନିବାର ସନ୍ଧ୍ୟାଏଁ, ଏପରିକି ଘରର ଜୀବଜନ୍ତୁ ସବୁ କିଛି କାମ କରିବେ ନାହିଁ ।

ତାଙ୍କର ଶେଷ କଥା, କଦାପି ଏହା ହେଇ ପାରିବ ନାହିଁ । ପ୍ରାୟ ଦରପେଟ ହୋଇ ଆମର ଦିନ କୌଣସି ମତେ କଟୁଥିଲା ।

— * —

## ॥ ଚଉଦ ॥

[illegible]ହରେ ପିଲାମାନେ ମୋଡ଼ ପାଖ ଦୋକାନକୁ ଯାଇ ସାଣ୍ଡୱିଚ କିଣି କରି ଖାଆନ୍ତି । ମୁଁ ବାହାରୁ ଆଢ଼ୁଆଳ ଠିଆ ହୋଇ ସେହି ପିଲାମାନଙ୍କୁ ଦେଖେଁ । କେହି କେହି ପଚାରନ୍ତି—କାହିଁ, ତୁମେ ତ କିଛି ଖାଉ ନାହିଁ ! ସେତିକି ବେଳେ ମୁଁ କହେ [illegible]—ଉପାସରେ ମୋତେ ମୋଟେ ଭୋକ ଲାଗେ ନା ।

ଯେତେ ବେଳେ ପିଲାଏ ପାଉଁଶେଟି କାଟି ଦେଖିରେ ମାଛ ଖୋଳ ମାଖନ୍ତି, ମୋ ପାଟିରୁ ଲାଳ ବହେ । ଛୋଟ ଗିଲା ବାରମ୍ବାର ଶପଥ ନେଇ-ଥିଲି, ମୁଁ ବି ଦିନେ ନା ଦିନେ ମୋ ଭୋକର ଅବସାନ ଘଟାଇବି ।

ମୋ ଆଖି ସାମନାରେ ଗୋଟିଏ ନୂଆ ଦୁନିଆର ଦୁଆର ଖୋଲିଗଲା ।

ବିଦ୍ୟାଳୟ ଛୁଟି ହେଲେ ମୁଁ ଘରକୁ ଫେରିଯାଏ ନା । ବହିପତ୍ରସବୁର ମୁଣ୍ଡିଟା କାନ୍ଧରେ ଝୁଲାଇ ମୁଁ ସହପାଠୀମାନଙ୍କ ସହିତ ବଣ-ଜଙ୍ଗଲ, ନଈ-ନାଳ, ଦୋକାନ-ବଜାରରେ ଘୂରି ବୁଲେ । ଦୁଇଏକ ଥର ବିନା ଟିକଟରେ କେଉଁ ସିନେମା ଘରେ, ଛଟା ଶାଟି, କାଠ ଗୋଲା କି କଳ କାରଖାନାରେ ଯାଇ ଦେଖେଁ, ସେମାନେ କିପରି କାମ କରୁଛନ୍ତି । ଭୋକରେ ପେଟ ଜଳୁଥାଏ, ନିଜକୁ ସମ୍ଭାଳି ପାରେ ନା, ମୋ ଦେହ ଥରେ, ଦମ ବନ୍ଦ ହୋଇଆସେ । କିନ୍ତୁ ଏକ ସ୍ୱାଧୀନ ପରିବେଶର ଅସୀମ ଆନନ୍ଦ ମୋତେ ମତାଇ ଦିଏ, ସେତିକି ବେଳେ ମୁଁ ଭୋକ ଶୋଷ କୁଆଡେ ପାଶୋରି ଦିଏ ।

ମୋ ଶ୍ରେଣୀରେ ଜଣେ ଢେଙ୍ଗା କଳା ପିଲା ପଢୁଥିଲା । ସେ ଭଲ ପଢୁଥିଲା । କିନ୍ତୁ ସେ କାହାକୁ ପରୁଆ କରୁ ନ ଥିଲା, ଭୋକରେ ଯେ ମୁଁ ଛଟପଟ ହୁଏ, ଦିନେ ସେ ତାହା ଲକ୍ଷ୍ୟ କରି ଦେଲା—ଦିନ ଯାକ କିଛି ନ ଖାଇ ତୁମେ କିପରି ଶ୍ରେଣୀରେ ବସି ରୁହ ?

ମୁଁ ତାହାକୁ ନିଜର ଅସହାୟତା ଜଣାଇଲି—କିଅଣ ବା ଖାଇବି ?

ମୋରି ଭଳି ତୁମେ କିଛି କାମ କରୁ ନା ?

କି କାମ ?

ଫୁରୁସତ ବେଳେ ମୁଁ ଖବରକାଗଜ ବିକେ !

ତାହା ହେଲେ ମୁଁ ବି ଖବରକାଗଜ ବିକିବି, କାରଣ ନିଜେ ରୋଜ୍-ଗାର ପାରିବି—ସାଥୀକୁ ଜଣାଇଲି ।

ସେ ହସି ହସି କହିଲା— ସତେ ! ମୁଁ ତ ସେଇଥି ପାଇଁ କାଗଜ ବିକେ ।

ପଚାରିଲି—କି କାଗଜ ବିକ ?

ସେଟା ଟକାଟୋଲୁ ପ୍ରତି ସପ୍ତାହରେ ବାହାରେ । ତା ସହିତ କେଣ୍ଡି ଏ

ସାମୟିକୀ ବି ଥାଏ - ପିଲାଟି ଖବର ଦେଲା ।

କାଗଜଟି କି ଧରଣର ?

ଏତେ ଖବର ଫବର ମୁଁ ପଢ଼େ ନା । ସେଥିରେ ମୋର କି ଯାଏ ଆସେ କହୁ ଭାଇ, ତା ସହିତ ଯେଉଁ ସାମୟିକୀଟି ଥାଏ, ସେଥିରେ କେତେକ ମଜା ମଜା ଗପ ତ ରହେ, ତାହା ଛଡ଼ା ଗୋଟାଏ ଧାରାବାହିକ ଉପନ୍ୟାସ ମଧ୍ୟ ଚାଲିଥାଏ । ମୁଁ କେବଳ ସେଇଟା ପଢ଼େ ।

ମୁଁ ବଲବଲ କରି ତା ମୁହଁକୁ ଅନାଇଲି । ପଚାରିଲି—ସେଟା ମୁଁ କେଉଁଠି ପାଇବି ?

ପିଲାଟି ଜଣାଇଲା—ନିଶ୍ଚୟ । ସେଥିକୁ ସାତ ଦିନରେ ଥରେ ମୁଁ ପାଏ ପଇସା ଦେଇ । ମୋ ପଢ଼ା ଖରଚଟା ବି ଚଳିଯାଏ ।

ପିଲାଟି ସହିତ ମୁଁ ତା ଘରକୁ ଗଲି । ମୋତେ ଗୋଟିଏ ସଂଖ୍ୟା ଦେଲା, ସାମୟିକୀଟି ମଧ୍ୟ । ବଡ଼ି କାଗଜ, ଛପା ଭଲ ନୁହେଁ, ଗାଉଁଲି ଲୋକେ ସେଟା ଅଧିକ ପଢ଼ନ୍ତି ।

ଚଟାପଟ୍ ଏଟା ବଡ଼ ଦଥ, ତାପରେ ଯାହା କାଗଜ ବିଷୟରେ ଆଲୋଚନା କରିବା—ମୋ ସାଥୀ ଜଣକ ଅନୁରୋଧ କଲା । ମୁଁ ଖୁସିରେ ରାଜି ହେଲି ।

ଜଣେ କଳା ଲୋକ ବଢ଼େଇ କାମ କରେ, କମ୍ କଥା କହେ । ଦିନେ ସଞ୍ଜ ବେଳେ କାଗଜଟି ନେଇ ତା ଘରକୁ ଗଲି । ସେ କାଗଜ ନେଇ ଦାମ୍ ଦେଲା । ତାପରେ ମୋ ମୁହଁକୁ ଅପଲକେ ଅନାଇ କହିଲା—ପୁଅ, ପ୍ରତି ସପ୍ତାହରେ ମୁଁ କାଗଜଟି ନେବି, ତୁମେ କି ଦି ପଇସା ପାଇବ । କିନ୍ତୁ ତୁମେ ଯେ, ଏ କାଗଜ ବିକୁଛ, ତୁମ ଘରଲୋକ ଏହା ଜାଣନ୍ତି ?

ହଁ, ଏଥିରେ ଅନ୍ୟାୟଟା କଅଣ ?

ସେ ମୋ କଥା ଏଡ଼ାଇ ଦେଲା, ଧୀରେ ଧୀରେ ଉଠିପଡ଼ି କହିଲା—ବୁଝ ତୁମକୁ ଗୋଟାଏ ବିଷୟ ଦେଖାଉଛି ।

ଘର ଭିତରୁ ଖଣ୍ଡିଏ କାଗଜ ଆଣି ସେ ମୋତେ ଗୋଟିଏ ବିଜ୍ଞାପନ [illegible] ଦେଖିଛ ?

ମୁଁ ଉତ୍ତରରେ ଜବାବ ଦେଲି—ନା ପତ୍ରିକାର ପୃଷ୍ଠା ଛଡ଼ା ମୁଁ କାଗଜର ଆଉ କିଛି ପଢ଼େ ନା ।

ବେଶ୍, ନିଜେ ଥରେ ପଢ଼, ଆଉ ଭବଚନ୍ଦ୍ର ମୋତେ ତୁମ ମତାମତ ଜଣାଅ ।



## ॥ ପନ୍ଦର ॥

କାଗଜଟି ଗଲ୍ଫ ଓ୍ୱାହ୍ରର । ଛବିଟାକୁ ମୁଁ ଥରେ ଦେଖିଲି । ଜଣେ ମୋଟାସୋଟା କଳା ଲୋକ ଗୋଟିଏ ଝକ୍‌ଝକ୍ ବଡ଼ ଟେବୁଲ ସାମ୍ନାରେ ଫୁଲା ଚଉକିରେ ବସିଛି । ମୁଣ୍ଡ ଟାଳରେ ଲାଗି ଯାଇଛି । ତା ଓଠ ଦୁଇଟା ମୋଟା, ନାକଟା ଚେପଟା, କେଉଁଟା ଦାନ୍ତ ସୁନାରେ ବନ୍ଧା, ପାଦ ଦୁଇଟି ଟେବୁଲ ତଳେ ବାଘଛାଲ ପଡ଼ିଛି, ଜୋତା ଚକ୍‌ଚକ୍ କରୁଛି, ଓଠ ମଝିରେ ବଡ଼ କଳା ସିଗାର, ତା ଅଗର ପାଉଁଶ କେତେ ବେଳୁ ଝଡ଼ି ଯାଇ ନାହିଁ । ନାଲି ଟହ ଟହ ଆଖିଟି ଫିକ୍‌ରେ ଅଟକା ହୋଇଛି । ଲୋକଟି ନାଲି ପେଣ୍ଟ ଓ ଡୋରିଆ ରେଶମୀ ଜାମା ପିନ୍ଧିଛି, ମୋଟା ଆଙ୍ଗୁଠିରେ ହୀରାର ମୁଦି, ଗୁଡ଼ ଉପରେ କେତେ ସୁନା ଚେନ୍ ଝୁଲୁଛି । ଟେବୁଲର ଗୋଟାଏ କୋଣକୁ ଖଞ୍ଜାରରେ ଭର୍ତ୍ତି ଅଫଗାନିସ୍ତାନ ଫିକ୍‌ଦାନିଟାଏ ଥୁଆ ହୋଇଛି । କାନ୍ଥରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି, "ଡ ହ୍ୱାଇଟ୍ ହାଉସ" । ତା ତଳେ ଅବ୍ରାହାମ ଲିଙ୍କନଙ୍କ ଛବି । ମୂର୍ତ୍ତି କିମ୍ଭୁତ ।

ଶିରୋନାମାରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି—ମାର୍କିନ ଯୁକ୍ତରାଷ୍ଟ୍ରଙ୍କ ସାମ୍ରାଜ୍ୟ ଆକ୍ରମଣ ଓ ଜୋଗା ଜମିଦାରମାନଙ୍କୁ ସାହାଯ୍ୟ ହେଉଛି ପ୍ରତ୍ୟେକ 'ନାଗର'ର ଜୀବନର ଏକମାତ୍ର ଧର୍ମ । ମାର୍କିନ ଭଲଗେ.

ଆମର ଏହି ସୁନ୍ଦର ଦେଶରେ ଆମେ କଷ୍ଟଣ କେବେ ଏସବୁ ଘଟିବାକୁ ଦେଇ ପାରିବା ? ଏକଜୁଟ ହୁଅ ! ଗୋରା ନାଷ୍ଟି ଜାତିର ମାନ ରକ୍ଷା କର ।

ମୁଁ ବ୍ୟଙ୍ଗ ଛବିଟିକୁ ଆଁ କରି ଅନାଇ ରହିଲି । ତା ଶିରୋନାମାର ଗୂଢ଼ ମାନେ ବୁଝିବାକୁ ମୁଁ ଚେଷ୍ଟା କଲି ।

ଭଦ୍ରଲୋକ ପଚାରିଲେ—ଏଥର ଏ ଛବିର ମାନେ ବୁଝି ପାରିଲ ?

ନା ତ—ମୁଁ ଜବାବ ଦେଲି ।

ଭଦ୍ରଲୋକ ଚାପା ଗଳାରେ କହି ଗଲେ—ଦଳେ ଲୋକ ଅଛନ୍ତି, ଯେଉଁମାନେ କଳା ଲୋକଙ୍କୁ ମାରି ପକାନ୍ତି, ସେମାନଙ୍କୁ ଭୋଟ ଦେବାରେ ବାଧା ଦିଅନ୍ତି, ଭଲ ଚାକିରି ବି କରିଇ ଦିଅନ୍ତି ନାହିଁ । ତୁମେ ଯେଉଁ କାଗଜ ବିକୁଛ, ସେଟା ଏହି ଦଳର ମତବାଦ ପ୍ରଚାର କରୁଛି । ଶୁଣ, ତୁମେ ପରା ନିଗ୍ରୋ ପିଲା ! ତୁମେ ଏହି କାଗଜ ବିକି ଦି ପଇସା ପାଇବାକୁ ତ ଚାହିଁ । ବେଶ୍, ଭଲ କଥା । ମୁଁ ସେଥିରେ ବାଧା ଦେଉ ନାହିଁ । କିନ୍ତୁ ତୁମେ ବୁଝି ପାରୁ ନାହିଁ, ଏହି କାଗଜ ବିକିବା ମାନେ ହେଲା ତୁମକୁ ମାରିଦେବା ଲାଗି ଗୋରା ଲୋକଙ୍କୁ ସାହାଯ୍ୟ କରିବା । ତାହା ଛଡା ଏଥିରେ ଯେଉଁ ପ୍ରବନ୍ଧ ସବୁ ବାହାରୁଛି, ସେଥିରେ ନିଗ୍ରୋମାନଙ୍କୁ ପୋଡ଼ି ମାରିଦେବା ସପକ୍ଷରେ ଓକିଲାତି କରା ହୋଇଛି ।

ମୁଁ ତ ଏପରି ନିଠୁର କଥା ବିଶ୍ୱାସ କରିପାରିଲି ନାହିଁ । ତାହାଙ୍କ ହାତରୁ କାଗଜଟି ଟାଣି ଆଣି ମୁଁ ପଢ଼ିବାକୁ ଲାଗିଲି । ପୃଷ୍ଠା ପରେ ପୃଷ୍ଠା ପଢ଼ୁ ପଢ଼ୁ ଭୟ ଓ ଆତଙ୍କରେ ମୁଁ ଥରିଲି ।

ସେ ପଚାରିଲେ—ଏବେ ଏହି କାଗଜଟା ତୁମ ମନକୁ ପାଉଛି ତ ?

ନା - ମୁଁ ଅଣନିଶ୍ୱାସୀ ହୋଇ ଜବାବ ଦେଲି ।

ସେହି ଦିନଠୁ ମୁଁ ଆଉ ସେହି ନିନ୍ଦିତ ଏହି କାଗଜ ବିକା ଛାଡ଼ିଦେଲି ।

ଏଣିକି ମୁଁ ପାଠପଢ଼ାରେ ଜୋର୍‌ସୋରରେ ମାତିଗଲି ।

ଶ୍ରେଣୀରେ ମୁଁ ଲିଖୁ ଇଂରେଜୀ, ଅଙ୍କ, ଭୂଗୋଳ, ନାଗରିକ ଜୀବନ ଇତ୍ୟାଦି ବିଷୟରେ ବହି ପଢ଼ୁ ପଢ଼ୁ ଖୁବ୍ ଆଗେଇଲି । ଶେଷ ବିଦ୍ୟାଳୟରେ

ମୋର ଆଉ କିଛି ଅସୁବିଧା ହେଲା ନାହିଁ । ଅବସର ସମୟରେ ଗୋଇନ୍ଦା କାହାଣୀ ଓ ଅନ୍ୟାନ୍ୟ ଗପସବୁ ନାନା ପତ୍ରିକାରୁ ପଢ଼ିଲି । ଅନେକ ଅଜଣା ଦେଶ ଓ ନରନାରୀଙ୍କ କଥା ମଧ୍ୟ ଜାଣି ପାରିଲି ।

ଏମିତି ବରଷଟିଏ କଟିଲା । ତେବେ ଆଉ ମାଆଙ୍କର ତଥାକଥିତ 'ବିଶ୍ରାମ ଦିବସ'ରେ କିଛି କାମଦାମ ଯୋଗାଡ଼ କରି ପାରିଲି ନାହିଁ । ଗରମ କାଳରେ ଲମ୍ବା ଦିନଗୁଡ଼ାକ ନୀରସରେ କଟିଲା । ଘରେ ଖାଲି ବସି ରହି ଆକାଶ କୁସୁମ ତୋଳୁଥିଲି, ଆଉ ଶ୍ଳେକରେ ଆଉଟ ପାଉଟ ହେଉଥିଲି । ଦିପହରେ ପଡ଼ାର ପିଲାଙ୍କ ସହିତ ବଲ୍ ଖେଳୁଥିଲି । ରାତିରେ ଘର ସାମନାରେ ପିଣ୍ଡାରେ ବସି ବାଟରେ ଯାଉଥିବା ନାନା ଧରଣର ନରନାରୀ ଓ ଗାଡ଼ିଗୁଡ଼ାକ ଦେଖୁଥିଲି ।

ସେତେ ବେଳେ ମୁଁ ଅଷ୍ଟମ ଶ୍ରେଣୀରେ ପଢ଼ୁଥିଲି । ଶ୍ଳେକ ଓ ଅସ୍ଥିରର ତାଡ଼ନାରେ ଦିନ ବିତି ଯାଉ ଥିଲା । ଦିନେ ଦିପହରେ ଶ୍ରେଣୀରେ ବସିବସି ଭଲ ଲାଗିଲା ନାହିଁ । ରଚନା ଖାତାଟା ଖୋଲି ଗୋଟିଏ ଗପ ଲେଖିବାକୁ ମନ ସକସକ ହେଲା । ଗପର ଖସଡ଼ାଟା ବି ମଗଜରେ ଆସି ଢୁକିଲା । ଯାହା ହେଉ, ଦିନଟା ଦିନରେ ମୋ ଗପ ଶେଷ ହେଲା । ଏବେ ସମସ୍ୟା ଉପୁଜିଲା, ଗପଟି କଅଣ କରିବ ?

ତୁରନ୍ତେ ମୋତେ ଗୋଟାଏ ବାଟ ଦିଶିଲା । ଏଠିକାର ଜଗ୍ରୋ ପତ୍ରିକାର ଅଫିସକୁ ଧାଇଁଲି । ସମ୍ପାଦକଙ୍କ ଆଡ଼କୁ ପାଣ୍ଡୁଲିପିଟି ବଢ଼ାଇ ଦେଲି ।

କଅଣ ସେଟା ? ସମ୍ପାଦକ ମୋତେ ପଚାରିଲେ ।

ଜବାବ ଦେଲି—ଗୋଟିଏ ଗପ ।

ହେଉ, ପଢ଼ି ଦେଖିବି—କହି ସମ୍ପାଦକ ମୋ ହାତରୁ ପାଣ୍ଡୁଲିପିଟି ନେଲେ, ଆଉ ଦରଜ ଭିତରେ ପୁରାଇ ଦେଲେ ।

ନା, ଏବେ ପଢ଼ି ଦେଖନ୍ତୁ -- ଆବେଦନ କଲି ।

ସେ ମୁହଁର ଚଷମାଟା ନଳୀଟା ଦାନ୍ତରେ କାମୁଡ଼ି ଧରିଲେ, ଥରେ କାଶିଲେ, ଆଖି ଟେକି ମୋତେ ଅନାଇଲେ, ଆଉ ଜବାବ ଦେଲେ -ଗପଟା

ପଢ଼ି କାଲି ତୁମକୁ ମତାମତ ଜଣାଇବ ।

ହତାଶ ହେଲି । ଏତେ ମେହେନତ କରି ଗପଟା ଲେଖିଥିଲି, ତାହା ହେଲେ କଅଣ ସବୁ ବିଫଳ ହେଲା !

ନା, ତାହା ହେଲେ ଗପଟା ମୋତେ ଫେରାଇ ଦିଅନ୍ତୁ—ତାହାଙ୍କ ଆଡ଼କୁ ହାତ ବଢ଼ାଇଲି ।

ସେ ମୋତେ ଥରେ କଟମଟ କରି ଅନାଇଲେ । ପାଣ୍ଡୁଲିପିର ଦଶ ପୃଷ୍ଠା ଯାଏ ସେ ତରବରରେ ପଢ଼ିଗଲେ, ଆଉ କହିଲେ - କାଲି ଆସ, ସ୍ୱା ଭିତରେ ସମୁଦାୟ ପାଣ୍ଡୁଲିପିଟା ମୁଁ ପଢ଼ି ଦେଇଥିବି ।

ହେଉ, କାଲି ପୁଣି ଆସିବି - କହି ମୁଁ ଚାଲି ଆସିଲି । ଜାଣିଥିଲି, ସେ କଦାପି ସେଟା ଆଉ ପଢ଼ିବେ ନାହିଁ । ତଥାପି ପର ଦିନ ତାହାଙ୍କ ଅଫିସରେ ଯାଇ ଭେଟିଲି । ଜନସ୍ୱରେ ପଚାରିଲି - ମୋ ଗପଟା କାହିଁ ?

ସେ ତତକ୍ଷଣେ ଜବାବ ଦେଲେ - ହେଇ ସେ ଟେବୁଲରେ ।

ଟେବୁଲ କଅଣ ସେତେ ବେଳେ ମୋତେ ମାଲୁମ୍ ନ ଥିଲା । ତେଣୁ ତାହାଙ୍କ ମୁହଁକୁ ବଲବଲ କରି ଅନାଇ ରହିଲି ।

ମୋ ହାବଭାବ ଦେଖିଲା ସେ ପୁଣି ଜବାବ ଦେଲେ - ସେଟା ପସନ୍ଦ ହେଉଛି, ପତ୍ରିକାରେ ବାହାରିବ ।

କେତେ ଟଙ୍କା ପାଇବି ? ଉତ୍ଫୁଲ୍ଲିତ ହୋଇ ମୁଁ ପଚାରିଲି ।

ଗପ ଲାଗି ଆମେ ଟଙ୍କା ଦେଉନା - ସମ୍ପାଦକ ଜଣାଇଲେ ।

କାଗଜ ବାଲା ତ ଆପଣ ଟଙ୍କା ପାଆନ୍ତି ।

ହଁ, ପାଉ । ଯେବେ ତୁମେ ତ ନୂଆ କରି ଲେଖୁଛ । ଏହି ଗପଟି ଜରିଆରେ ତୁମେ ଯେ ଆମ ପାଠକଙ୍କ ସହିତ ପରିଚିତ ହୋଇ ପାରିବ, ଏଟା କଅଣ କମ୍ ବଡ଼ କଥା ? କହି ଦେଇ ସେ ହସି ପକାଇଲେ ।

ମୁଁ ପୁଣି ଜୋର୍ ଦେଲି - ଯଦି ଆପଣ ମନେ କରୁଛନ୍ତି ଯେ ଗପଟାରେ କାଟତି ଭଲ ହେବ, ତାହା ହେଲେ ମୋତେ କିଛି ପାରିଶ୍ରମିକ ଦେବା ଉଚିତ ।

ସେ ମୋ କଥାରେ ମଜା ପାଉଥିଲେ, ପୁଣି ଥରେ ହସି କହିଲେ - ମୁଁ

ଯେ ତୁମକୁ ଲେଖିବାର ସୁଯୋଗ ଦେଉଛୁ । ଟଙ୍କାଠାରୁ ତାହାର ଦାମ୍ ଢେର୍ ବେଶି ।

ତାପରେ ମୋ ମନଟା ଟିକିଏ ମାନିଲା, ଫେର୍ ପଚାରିଲି-ଗପଟା କେବେ ବାହାରିବ ?

ସେ ଆଗ ପରି ହସି ହସି ଜଣାଇଲେ-ଗପଟାକୁ ତିନି ଦଫାରେ ବାହାର କରିବ ବୋଲି ମୁଁ ଠିକ୍ କରିଛୁ । ପ୍ରଥମ ଦଫାଟା ଚଳିତ ସପ୍ତାହରେ ବାହାରିବ ।

କିଛି ସମୟ ପରେ ସେ ମୋତେ ପଚାରିଲେ-ଆଚ୍ଛା, ତୁମେ ଆମ କାଗଜ ଲାଗି ଖବର ଯୋଗାଡ କରି ପାରିବ ? ତାହା ହେଲେ ପୃଷ୍ଠା ହିସାବରେ କିଛି ଟଙ୍କା ପାଇ ପାରନ୍ତ ।

ଦିଓଳି କାମ କରି ମୁଁ ପ୍ରତି ସପ୍ତାହରେ ତିନି ତଳାର ଲେଖାଏଁ ଦରମା ପାଏଁ—ବିନୟରେ ମୁଁ ଜଣାଇଲି ।

ସମ୍ପାଦକ କହିଲେ—ବେଶ୍ ଭଲ କଥା । ଖସ୍ ଛୁଟିରେ ଥରେ ଆସି ମୋତେ ଦେଖା କର । ତେଣେ ଆହୁରି ଗପ ବି ଲେଖୁଥାଅ ।

କେତୁଟା ଦିନ ପରେ ସହପାଠୀମାନେ ଖଣ୍ଡିଏ ପତ୍ରିକା ହାତରେ ଧରି ମୋତେ ଘେରିଗଲେ । ଚକିତରେ ପଚାରିଲେ—କିରେ, ତୁ ଏ ଗପଟା ଲେଖିଛୁ ନା କଅଣ ?

ମଥା ହଲାଇଲି—ହଁ ।

କାହିଁକି ?

ଲେଖିବାକୁ ମନ ବଳିଲା ।

ସେଟା କେଉଁଠୁ ପାଇଲୁ ?

ନିଜେ ଲେଖିଛୁ ।

ଆପେ ଆପେ ଲେଖିଛୁ ନା ଆଉ କିଛି ! ହୁଏତ କୌଣସି ବହିରୁ ଉତାରି ଦେଇଛୁ । ତାହା ହେଲେ ସେଟା ଛପା ହୋଇ ନ ଥାଆନ୍ତା । ତୋତେ ଏ ଗପ ଲେଖିବାକୁ କିଏ କହିଲା ?

କେହି ନୁହେଁ ।

ସହପାଠୀମାନେ ବିଶ୍ୱାସ କଲେ ନାହିଁ । ଭାବିଲେ ମୁଁ ମିଛ କହୁଛି ।

କେଉଁ ଗପର ନାମଟାର ମାନେ ସୁଦ୍ଧା ବୁଝିପାରିଲେ ନାହିଁ । ତେଣୁ ସେମାନେ ମୋଠୁଁ ଦୂରେଇ ଗଲେ ।

ଏଇ ଗପଟିକୁ ନେଇ କରି ଆମ ଘରେ ତୁମୁଳ ଝଡ଼ ଉଠିଲା ।

ଦିନେ ସକାଳେ ଅପ୍ରନକ ଆଈମାଆ ଆସି ଆମ ଘରେ ହାଜର ହେଲେ ।

ଆସି ଦେଖାଇ ପଚାରିଲେ—ବସ୍ତୁଭ, ତୁ କୁଆଡେ କାଗଜରେ ଗୋଟାଏ ଗପ ଲେଖିଛୁ, ସେଟା ଉଳନ ଦଫାରେ ବାହାରିବ । କେବେ ବିଷୟଟା କଅଣ ?

ଆଈମାଆ ଜିଦ୍ ଧରିଲେ । ବୁଝାଇ ଦେଲି—ସେଟା ଖାଲି ଗୋଟାଏ ମନଗଢ଼ା ଗପ ।

ତାହା ହେଲେ ତୁ ପ୍ରଭୁ ଯୀଶୁଙ୍କ ନାମରେ ମିଛ କଥା କହିବାକୁ ବସିଛୁ - ଆଈମାଆ ଧମକାଇଲେ ।

କାତର ଗଳାରେ ମୁଁ ମିନତି କଲି—କପରି ତୁମକୁ ବୁଝାଇବି, ଆଈ ! ମନଗଢ଼ା ଗପ କଅଣ କେବେ ସତ ହୁଏ ?

ଆଈମାଆ ଗର ଗର ହୋଇ ଚାଲିଗଲେ ।

ମାଆ ବି ଖୁବ୍ ଦୁଃଖିତ ହେଲେ, ବୁଝାଇଲେ—ବାବାରେ, ତୁ କଅଣ ଆଉ ସାନ ପିଲାଟିଏ ହୋଇଛୁ ? ହସି ଖେଳି ବୁଲିବାର ସମସ୍ତ କଅଣ ଆଉ ତୋର ଅଛି ? ଯଦି ବିଦ୍ୟାଳୟର ଅଧକ୍ଷ ଶୁଣନ୍ତି ଯେ ତୁ ଗପସପ ଲେଖୁଛୁ, ତାହା ହେଲେ ସେ କଅଣ ତୋତେ କିଛି ଚାକିରି ଦେବେ ?

ମୋ ତୁଣ୍ଡରୁ କିଛି କଥା ବାହାରିଲା ନାହିଁ, ମଥା ତଳକୁ ପୋତିଲି । କିଛି ସମସ୍ତ ପରେ ମୁଁ ଖାଲି ଜଣାଇଲି—ହେଉ ସେଇଆ ହିଁ ହେବ, ମାଆ ।

ଟମ ମାମୁଁ ଅବାକ ହୋଇ ଯାଇଥିଲେ । କିନ୍ତୁ ସେ ସବୁଠୁ ବେଶି କଡ଼ା ସମାଲୋଚନା କଲେ—ଛିଃ ! ସେଟା ଗୋଟାଏ ଗପ ନା କଥା ଯାଉଣି । କି ଅଜବ ନାମ ! କେଉଁ କେବେ ଶୁଣିଛୁ ?

ଅଭ ମାଉସୀ ଯୋଗ କଲେ—ନରକ ଶବଦଟା ମୁହଁରେ ଆଣିବା ମହାପାପ । କେଉଁ ମୂରବ ନ ଥିଲେ ପିଲାଏ ତ ଏମିତି ବଗିଡି ଯାଆନ୍ତି ।

ଅବଶେଷରେ ମୁଁ ଖୁସଣ ଚଟିଗଲି । କେବଳ ସମ୍ପାଦକଙ୍କ ଛଡ଼ା ମୁଁ ଆଉ କାହାଠାରୁ ପଦେ ହେଲେ ଉତ୍ସାହର ବାଣୀ ଶୁଣିଲି ନାହିଁ । ଚଉଦିଗରୁ ଏଣୁ ତେଣୁ ଖରାପ କଥା ଶୁଣି ଶୁଣି ଏକ ସମୟରେ ମୋର ମନେ ହେଲା, ହୁଏତ ମୁଁ କିଛି ଅପରାଧ କରିଛି ।

ଧେତ୍, ଉତ୍କଳ ମୂଲୁକରୁ ମୁଁ ପଳାଇଯିବି । ସେଠାରେ ବସି ରହି ବହି ଲେଖିବି । ଉପନ୍ୟାସ, ଗପ !

ଯାହା କିଛି ଦେବେ ଦେଖି ନାହିଁ, ନା ଅନୁଭବ କରି ନାହିଁ, ସେହି ସପନରେ ମୁଁ ଏକାବେଳେ ବିଭୋର ହୋଇଗଲି ।

ସେତେ ବେଳେ ମୋର ବୟସ ମୋଟେ ପନ୍ଦର ବରଷ ।

✳ ସ ମା ପ୍ତ ✳



ମ୍ପ ॰ ॰